# ହରିକଥା

## ହରେକୃଷ୍ଣ ଦାସ



" ଯସ୍ୟ ପ୍ରହ 'ବାତ୍ ଭଗବତ୍ ପ୍ରସାଦୋ ଯସ୍ୟ ପ୍ରସାଜାତ୍
ନ ଗତିଃ : କୁତୋପି । ଧାୟାନ ସ୍ତବନ ତସ୍ୟ ଯଶଃ
ତ୍ରିସନ୍ଧ୍ୟଂ ବନ୍ଦେ ଗୁରୋଃ ଶ୍ରୀ ଚରଣାର ବିନ୍ଦମ୍"

# ହରିକଥା

ଲେଖକ ଏବଂ ପ୍ରକାଶକ
ହରେକୃଷ୍ଣ ଦାସ

ଠିକଣା:
ଗ୍ରାମ/ପୋଷ୍ଟ-ସିଙ୍ଗିରି
ଭାୟା-ପଟ୍ଟାମୁଣ୍ଡାଇ
କେନ୍ଦ୍ରାପଡା-୭୫୪୨୧୫

ପ୍ରଥମ ସଂସ୍କରଣ-୨୦୧୫

ସଂଗ୍ରହ ଓ ସୂଚନା ପ୍ରକାଶକ:
ଉଷା ପ୍ରିଣ୍ଟ
ମା'ଶକ୍ତି ହସ୍‌ପିଟାଲ, ୟୁନିଟ୍-୬
ପ୍ଲଟ୍ ନଂ-୨୪୪/୨୦୫୮, ଭୁବନେଶ୍ୱର
ଅକ୍ଷର ସଜ୍ଜା:
ସଞ୍ଜୟ କୁମାର ଗୋଛି
୯୬୫୮୭୧୬୪୭୪
୮୯୦୮୯୧୨୫୨୮



ମହାପୁରୁଷ ନିତ୍ୟାନନ୍ଦ ଗୋସାଇଁଙ୍କ ବଲ୍ମିକୀ ରୂପ ୧୮୫୦
ମସିହା ମାଘମାସ ଶୁକ୍ଳପକ୍ଷ ସପ୍ତମୀ ତିଥିରେ ସୂର୍ଯ୍ୟୋଦୟ
ସମୟରେ ମହାପ୍ରସ୍ଥାଣ ଯୋଗ ପଡିଥିଲା



ପିତାଧର୍ମ ପିତାସ୍ୱର୍ଗ ପିତାହିଁ ପରମଂ ତପଃ
ପିତରି ପ୍ରିତିମାପନ୍ନେ ପ୍ରିୟନ୍ତେ ସର୍ବଦେବତାଃ

ସ୍ୱର୍ଗତ-୰ଗୋପାଳ ଚରଣ ଦାସ
ପିତା-ବିହାରୀ ଦାସ,ପ୍ରପିତାମହ-ନିତ୍ୟାନନ୍ଦ ଗୋସାଇଁ
ଜନ୍ମ- ୧୩୨୧ ଚୈତ୍ର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ରାତ୍ରଦ୍ୱିତୀୟ ପ୍ରହର
ମୃତ୍ୟୁ- ୧୩୯୯ ସାଲ ମାଘ ମାସ କୃଷ୍ଣପକ୍ଷ ଦଶମୀ ବିଶାଖା ବିଛା ରବିବାର ପୂର୍ବାହ୍ନ
୮ଘଣ୍ଟା ୪୦ମିନିଟ୍
ଇଂରାଜୀ- ୧୯୯୦ ମସିହା ଜାନୁୟାରୀ ମାସ ୨୧ ତାରିଖ
(ବୟସ ୭୮ ବର୍ଷ ୧୦ମାସ ଆନୁମାନିକ)

ପୁତ୍ର-ହରି



"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସି"

ଂ ଦୁଲାଳୀ ଦାସ

"ଶେଷ ଦିନର ଶେଷ ଆଦେଶ" ଆଜି ତୁ ଛୁଟିନେ । ସବୁଦିନ ଅଫିସକୁ ଯାଉଛୁ । ଆଜି ନ ଯାଆ । ବାଧ ହେବି ନା ଫାଙ୍କିଦେବି । ସେ ଦିନ ଉଚ୍ଚସ୍ତରୀୟ ବୈଠକରେ ନିଶ୍ଚୟ ରହିବାକୁ ପଡିବ । ଛୁଟି କିପରି ନେବି ? ସରକାରଙ୍କ ଚାକର । ସ୍ୱାଧିନତା କାହିଁ ? ତଥାପି ଅଫିସ୍ ଗଲି । ସମସ୍ତ ଅଫିସ ରେକର୍ଡ ଦେଲି । **S.D.O.**ଙ୍କୁ ସବୁକଥା କହିଲି । ଅଫିସ ଛାଡିଲି । ଦିନ ଗୋଟାଏ । ଜୀବନ ପାଇଁ ଶେଷ ଭୋଜନ ସରିଛି । ଆଜି ମୋ ଗୋଡ ଉପରେ ମୁଣ୍ଡରଖି ଶୋଇବାକୁ କହିଲା, କାରଣ ପିଲାବେଳେ ମୁଁ ତୋର କୋଳରେ ଶୋଇଛି, ଏହି ଥିଲା ତାର ଯୁକ୍ତି । ଅତୀତ ଜୀବନର କିଛି କିଛି କଥା କହିଲା । ସମୟ ନିକଟତର ହେଲା ମୋ ମୁହଁରେ ହସ୍ତର ଶେଷସ୍ପର୍ଶ ଦେଇ ଆଖିରୁ ଲୁହ ଗଡାଇ ଦେଲା ଏବଂ ସବୁଶେଷ । ଏ ଦୁନିଆରେ ମୋହ-ମାୟା ତୁଟାଇ ଦେଇ ଚାଲିଗଲା । ୧୯୮୩ ମସିହା ଶ୍ରାବଣ ମାସ ଶୁକ୍ଳ ପକ୍ଷ ୯ମୀ ତିଥି ଅପରାହ୍ନ ସମୟ ।"

ସ୍ନେହର ପୁତ୍ର

ହରି

# ପଦେ ଅଧେ

"ନିରତେ ଭଜ ହୃତଚିତ୍ତେ-ହରି ଚରଣେ ଅବିରତେ" ।

ପୁରାଣମାନଙ୍କରେ ସାରଗ୍ରନ୍ଥ ଶ୍ରୀମଦ୍ ଭାଗବତ ମହର୍ଷି ବ୍ୟାସଦେବଙ୍କ ଅମୃତ ଲେଖନୀରୁ କୁଳୁକୁଳୁ ନାଦର ଏକ ଚିର ପ୍ରବାହିତ ଅମୃତ ଧାରାର ସ୍ରୋତସ୍ୱତୀ ସରିତ । ଏହାର ସୃଷ୍ଟି କେଉଁଠି ଏବଂ ବିଳୟ କେଉଁଠି ? ଭଗବାନଙ୍କ ନାମ ସ୍ମରଣକରି ଚାଲିଛି-ଚାଲୁଛି-ଚାଲିଥିବ କେତେ କେତେ ମହାପ୍ରଳୟ ଆସିଥିବ କୁନ୍ତି ହରିନାମ ସ୍ମରଣ ମାତ୍ରେ ସମସ୍ତ ଦୁଃଖ ଚାଲିଯାଉଥିବ । ଏହି ସଂସାର ବାରିଧିକୁ ପାରହେବା ପାଇଁ ହରି ହିଁ ଏକ ନୌକା ।

ସେଥିପାଇଁ ଅତୀବଡି ଜଗନ୍ନାଥ ଦାସଙ୍କ ସ୍ୱରଚିତ ଶ୍ରୀମଦ ଭାଗବତରେ ପ୍ରତ୍ୟେକ ସ୍କନ୍ଦରେ-ପ୍ରତ୍ୟେକ ଅଧ୍ୟାୟରେ-ପ୍ରତ୍ୟେକ ଧାଡିରେ-ପ୍ରତ୍ୟେକ ଶବ୍ଦରେ ଭଗବାନଙ୍କ ଶକ୍ତି ଦୃଷ୍ଟମାନ ହୁଏ । ଏତେ ସରଳ ଏତେ ପ୍ରାଞ୍ଜଳ-ଦ୍ୱନ୍ଦ୍ୱମୁକ୍ତ-ଆଦର୍ଶଯୁକ୍ତ ପ୍ରାମାଣିକ କଥାବସ୍ତୁକୁ ନେଇ ରଚିତ । ଓଡିଆ ଘରେ ଘରେ ପାଠକରାଯାଏ । ମୃତ୍ୟୁକାଳୀନ ମଣିଷ କାଳେ ଭାଗବତକୁ ଶୁଣିଲେ ମୃତ୍ୟୁଯନ୍ତ୍ରଣାରୁ ମୁକ୍ତି ପାଇବ ଏବଂ ଯମଦଣ୍ଡରୁ ରକ୍ଷାପାଇବ ବୋଲି ବିଶ୍ୱାସ କରାଯାଏ ।

"ହରିକଥା" ପୁସ୍ତକର ସମସ୍ତ ବିଷୟବସ୍ତୁ ଦୈନିକ ପ୍ରକାଶିତ "ସମ୍ବାଦ କଳିକାରେ" ଶ୍ରୀଯୁକ୍ତ ଜୟାଶୀଷ ରାୟ ସମ୍ପାଦକଙ୍କ ଅନୁଗ୍ରହ ଏବଂ ଲେଖାଗୁଡିକର ନିୟମିତ ରୂପରେଖ ପ୍ରଦାନ କରିଛନ୍ତି ଶ୍ରୀମତୀ ସୁପ୍ରଭା ରାୟ, ସେମାନଙ୍କ ନିକଟରେ କୃତଜ୍ଞତା ଜଣାଏ ।

ସର୍ବଶେଷରେ ପୁସ୍ତକଟିକୁ **D T P**- ସଂଶୋଧନ-ମୁଦ୍ରଣ କରିଛନ୍ତି *ସଞ୍ଜୟ କୁମାର ଗୋଛି* , ପ୍ରେସ୍ ଉସା ପ୍ରିଣ୍ଟ ଙ୍କୁ ଧନ୍ୟବାଦ ।

॥ ଇତି ॥

ପ୍ରକାଶ ଲାଭ କରିଛି

ତା ୧୫/୦୬/୨୦୧୫

ନବକଳେବର ମହୋତ୍ସବ ।

ଲେଖକ

ହରେକୃଷ୍ଣ ଦାସ

# ହରିକଥା-୧

ଏହାର ସାମାନ୍ୟ ପୂର୍ବାଭାଷ ଦେବାଟା ଉଚିତ ହେବ। ଏହି ହରିଶବ୍ଦ କେଉଁଠାରୁ ସୃଷ୍ଟି ହୋଇଛି ? ଭଗବାନଙ୍କର ସହସ୍ର ନାମ। କିନ୍ତୁ ହରିନାମଟି ଏତେ ପ୍ରୀୟ ଶବ୍ଦରେ ପରିଣତ ହେଲା କାହିଁକି ? ଏହି ଶବ୍ଦଟିକୁ ଉଚ୍ଚାରଣ କଲେ ମନ ଭିତରେ ଆନନ୍ଦ ଆସେ କାହିଁକି ? ବର୍ତ୍ତମାନ କଳିଯୁଗ ଚାଲିଛି। ପଛରେ ରହିଯାଇଛି ତିନିଟି ଯୁଗ, ସତ୍ୟ,ତ୍ରେତା-ଦ୍ୱାପର-କଳି। ଯୁଗଧର୍ମ ଅନୁଯାୟୀ, ଭଗବାନଙ୍କ ସାନିଧ ଲାଭ ପାଇଁ ବିଭିନ୍ନ ଉପାୟ ମଧ ଶାସ୍ତ୍ରକାରଗଣ ବର୍ଣ୍ଣନା କରିଛନ୍ତି ଏବଂ ନିର୍ଦ୍ଦେଶ ମଧ ଦେଇଛନ୍ତି, ଯଥା-ସତ୍ୟ ଯୁଗରେ ଧ୍ୟାନଫଳ-ତ୍ରେତାରେ ଯଜ୍ଞାଦି ସକଳ-ଦ୍ୱାପରେ ହରିପୂଜା ଜ୍ଞାନ-କଳିରେ ନାମ ସଂକୀର୍ତ୍ତନ।" କେତେଦିନ ପର୍ଯ୍ୟନ୍ତ ଗୋଟିଏ ଯୁଗର ସ୍ଥିତି ଏ ପୃଥିବୀ ପୃଷ୍ଠରେ ରହେ, ତାହାର ମଧ ହିସାବ ଦିଆଯାଇଛି। ମନୁଷ୍ୟର ଜନ୍ମ ମୃତ୍ୟୁ ଯେଉଁଭଳି ଗୋଟିଏ ଅବସ୍ଥା ନ ଥାଏ, ବୟସାନୁଯାୟୀ ଶରୀର ଓ ତା'ର କାର୍ଯ୍ୟକଳାପର ପରିବର୍ତ୍ତନ ହୁଏ, ଠିକ୍ ସେହିଭଳି ପୃଥିବୀର ସମସ୍ତ କିଛି ସମୟାନୁଯାୟୀ ପରିବର୍ତ୍ତନ ହୁଏ, ତେଣୁ ଏ ଦୁନିଆରେ ସ୍ଥାୟୀ କିଛି ନାହିଁ ବା ସ୍ଥିରତା କିଛି ନାହିଁ। ଜନ୍ମ ମରଣ ଚକ୍ର ମଧରେ ଶୈଶବ-ବାଲ୍ୟ-ପୌଗଣ୍ଡ-ଯୌବନ-ବୃଦ୍ଧ ଇତ୍ୟାଦି ଇତ୍ୟାଦିର ସମୟ ନିରୂପଣ କରେ, ଏ ଦୁନିଆରେ ସମସ୍ତ କିଛିକୁ ସମୟ ନିୟନ୍ତ୍ରଣ କରେ।

ବିଶ୍ୱର ବୟସ ୧୬ କୋଟି ବର୍ଷ। ଏଥିରେ ରହିଛି ୪ଟି ଯୁଗ।ସତ୍ୟ-ତ୍ରେତା-ଦ୍ୱାପର-କଳି। ମୋଟ ଦେବତାମାନଙ୍କ ପାଇଁ ବାର ହଜାର ବର୍ଷ। ସତ୍ୟ ଯୁଗ ଦେବତାମାନଙ୍କ ପାଇଁ ୪ହଜାର ୮ଶହ ବର୍ଷ-ମନୁଷ୍ୟ ପାଇଁ ୧୭.୨୮.୦୦୦ ହଜାର ବର୍ଷ। ତ୍ରେତେୟା ଦେବତାମାନଙ୍କର ୩ହଜାର ୬ଶହ ବର୍ଷ-ମନୁଷ୍ୟ ୧୨.୯୬.୦୦୦ ବର୍ଷ। ଦ୍ୱାପର ଦେବତାଙ୍କର ୨ହଜାର ୪ଶହ ବର୍ଷ, ମନୁଷ୍ୟ ୮,୬.୦୦୦ ବର୍ଷ। କଳି ୧ହଜାର ୨ଶହ ବର୍ଷ, ମନୁଷ୍ୟ ୪,୩.୦୦୦ ହଜାର ବର୍ଷ। ୧୨ ହଜାର ବର୍ଷ ଦେବତାଙ୍କର, ମନୁଷ୍ୟ ୪୩,୨୦,୦୦୦ ହଜାର ବର୍ଷ। ପ୍ରତି ହଜାର ଓ ଶତବର୍ଷରେ କିଛି ଗୋଟିଏ ପରିବର୍ତ୍ତନ ହୁଏ। ଏହାର ନାମ ଯୁଗଧର୍ମ। ଏହାକୁ ଅଟକାଯାୟୀ ନ ପାରେ। ସମୟର ପରିବର୍ତ୍ତନ ହେତୁ ସମସ୍ତ କିଛି ପରିବର୍ତ୍ତନ ହୁଏ, କିନ୍ତୁ କିଛି ଗୋଟିଏ ସ୍ଥାୟୀ ଅଛି। ମିଛ ଦୁନିଆରେ ଗୋଟିଏ ସତ୍ୟ, ତାହା କ'ଣ ? ବର୍ତ୍ତମାନ ତାଙ୍କରି କଥା ହେଉଛି ଆଲୋଚ୍ୟ ବିଷୟ। ଦ୍ୱାପର ଯୁଗ ଶେଷ କଳି ଯୁଗ ଆରମ୍ଭ। ଦ୍ୱାପର ଯୁଗର ଶେଷ ଭାଗ ଉପସ୍ଥିତ। ଶ୍ରୀକୃଷ୍ଣଙ୍କର ସ୍ୱଧାମ ଯାତ୍ରା-ପାଣ୍ଡବମାନେ ଧ୍ୟାନସ୍ଥ ହୋଇ ସଂସାର

ତ୍ୟାଗ କରିବା ପୂର୍ବରୁ ଯୁଧିଷ୍ଠିର ପରୀକ୍ଷିତଙ୍କୁ ରାଜମୁକୁଟ ପିନ୍ଧାଇଛନ୍ତି । ପରିକ୍ଷିତ କିଏ ? ଅଭିମନ୍ୟୁ ଓ ତାଙ୍କ ସ୍ତ୍ରୀ ଉତ୍ତରୀ ଥିଲେ ତାଙ୍କର ପିତା ଓ ମାତା । ଗର୍ଭସ୍ଥ ସମୟରେ ଦ୍ରୋଣଙ୍କ ପୁତ୍ର ଅଶ୍ୱତ୍ଥମାର ବ୍ରହ୍ମାସ୍ତ୍ରରୁ ଭଗବାନ ଶ୍ରୀକୃଷ୍ଣ ଗର୍ଭରକ୍ଷା କରିଛନ୍ତି ପରୀକ୍ଷିତ ମାତା ଗର୍ଭରେ କରିଛନ୍ତି ପରୀକ୍ଷିତଙ୍କର । ମାତା ଗର୍ଭରେ ଥାଇ ପରୀକ୍ଷିତ ସମସ୍ତ ରହସ୍ୟ ଦେଖୁଛନ୍ତି । ଚାରିଆଡକୁ ଚାହିଁ ସମସ୍ତ ଦେଖୁଥିବାରୁ ତାଙ୍କର ନାମ ପରୀକ୍ଷିତ । ତେଣୁ ପରିକ୍ଷିତ ଥିଲେ ସର୍ବଦ୍ରଷ୍ଟା ଓ ସର୍ବଜ୍ଞ ।

ତେବେ, କଳିଯୁଗ ଓ ଦ୍ୱାପର ଯୁଗର ଯୁଗସନ୍ଧି ସମୟରେ ପରୀକ୍ଷିତ ହେଉଛନ୍ତି ପ୍ରଥମ ରାଜା ଓ ହରିଭକ୍ତ । "ହରେ କୃଷ୍ଣ ହରେ କୃଷ୍ଣ"କୃଷ୍ଣ କୃଷ୍ଣ ହରେ ହରେ । 'ହରେ ରାମ ହରେ ରାମ ରାମ ରାମ ହରେ ହରେ ।।' ହରେ ଅର୍ଥାତ୍ ହରଣ କରିନିଅନ୍ତି, କିଏ ? ଭଗବାନ ଶ୍ରୀକୃଷ୍ଣ । ସେହି ମଧ ଅଟନ୍ତି ହରି । କଳି ପ୍ରବେଶ କଲା ଓ ତାଙ୍କୁ ଅନୁରୋଧ ମଧ କଲା ଯେ ତାଙ୍କୁ ରାଜ୍ୟରେ ରହିବାକୁ ହେବ । ଏ ତ କାଳଚକ୍ରର ନିୟମ । ପରୀକ୍ଷିତ କଳିକୁ ଚାରିଗୋଟି ସ୍ଥାନରେ ରହିବାକୁ ମଞ୍ଜୁର କଲେ । ଯେଉଁଠାରେ ଦ୍ୟୁତ କ୍ରୀଡ଼ା ହୁଏ କରିବାରୁ ସୁବିଧା ଥାଏ । ତାସ୍-ପଣ୍ଡା-ଡୁ,ଡୁ,କ୍ରିକେଟ ଏବଂ ଯେତେପ୍ରକାର କ୍ରୀଡ଼ା ଅଛି, କେଉଁଠାରେ ଗଣ୍ଡଗୋଳ-ମାଟପିଟି -ମର୍ଡର ହେଉନାହିଁ ? ଶାନ୍ତିରେ ସମାପ୍ତି ହୁଏ ନାହିଁ । ଅଶାନ୍ତି ଅର୍ଥାତ କଳିଯୁଗର ପ୍ରଭାବ । ତେବେ ସତ୍ୟଯୁଗ-ତ୍ରେତେୟାଯୁଗ-ଦ୍ୱାପର ଯୁଗରେ ହେଉ ନଥିଲା କି ? ମହାଭାରତ ଯୁଦ୍ଧ, ଝିମିଟି ଖେଳରୁ, ପଶାପାଳିରୁ ଶତ୍ରୁତା ଆରମ୍ଭ । ଏହାକୁ ଲଗାଇଥିଲା କିଏ, ବିଶାଳ କୂଟନୀତିଜ୍ଞ ଭଗବାନ ଶ୍ରୀକୃଷ୍ଣ । ଆରମ୍ଭ ସେହି, ଶେଷରେ ସେହିମଝିରେ ସେହି । ନଟକୁଟିଆ ନାଗର, ନଟବର, ନଟକୁଟିଆ, ତୋର ପାଦ ତଳକୁ ମୋର କୋଟି ନମସ୍କାର, ନଟକୁଟିଆ ।

ମଦିରା-କାଦମ୍ବରୀ-କାଚପାଣି-ଠିପିଖୋଲା-ଯେଉଁଠି କଳି ସେଇଠି । ଆଗରୁ ମଦ ନାମ ଶୁଣାଯାଉ ନ ଥିଲା । ଯଦି କେହି ପିଇଛି ଶୁଣିଲେ ଜାତିରୁ ଅଟକ, ଗ୍ରାମରୁ ବାସନ୍ଦ ଗୋବର ପାଣି ପିଆଉ ଥିଲେ, କିନ୍ତୁ ଏବେ ? ତେବେ ପ୍ରସାର ଲାଭ କଲା କେବେ ?' ବିଜୁ-ବିରେନ୍ ଯେଉଁଠି ମଦ ବୋତଲ ସେଇଠି । ବର୍ତ୍ତମାନ ? ବାପା-ମା-ପୁଅ-ଝିଅ-ବୋହୂ, କ୍ୱଚିତ୍ ଏକତ୍ର ପାନ କରୁଥିବା କଥା ଶୁଣିବାକୁ ମିଳେ । କେତେକ ମଠ-ମନ୍ଦିରରେ ନିରୋଜ । ସ୍ଥାନରେ ସୁବିଧା ଦୃଷ୍ଟିରୁ ପ୍ରଚଳିତ ହେଲାଣି । ବରଯାତ୍ରୀମାନଙ୍କର ଧେଙ୍ଗାଡା ନାଚର ପ୍ରଧାନ ମୃଦୁପାନୀୟ ଚିଜ । ହେ ପରିକ୍ଷିତ ମହାରାଜ କ'ଣ କଲେ ? ବ୍ୟଭିଚାର-ଏହାର ଅର୍ଥ ନାରୀଙ୍କ ଶସ୍ତା ପ୍ରେମ । ବେଶ୍ୟାଳୟଠାରୁ ପାର୍କ ପର୍ଯ୍ୟନ୍ତ- ବାଟଘାଟରେ

ଆଖିରେ ଆଖିରେ, ଜୋରଜବରଦସ୍ତ ହେଲେ ବ୍ୟଭିଚାର। ମାମୁଲି କାରବାର ପ୍ରେମ-ଗୋଟାଏ ଲାଇସେନ୍ସ, ଆଉଟି ବିନା ଲାଇସେନ୍ସ। କିନ୍ତୁ ଭାଗବତ କହେ,ପରସ୍ତ୍ରୀ ଗମନ ହିଁ ବ୍ୟଭିଚାର। କିନ୍ତୁ ଆମେରିକା ସୁପ୍ରିମ୍‌କୋର୍ଟ କହେ, ବିନା ଅନୁମତିରେ ଗମନ ରମଣ ହିଁ ଅତ୍ୟାଚାର-ଦୋଷବହ। ଅତଏବ,ନିଜ ସ୍ତ୍ରୀର ଅନୁମତି ବିନା ? ଧର୍ଷଣ ମାମଲା।

ଜୀବହିଂସାର ସ୍ଥାନ-ଯାହାର ଜୀବନ ଅଛି, ସେହିଁହିଁ ଜୀବ। ବଞ୍ଚି ରହିବାର ଅଧିକାର,ଯେ ସୃଷ୍ଟିରେ ଜନ୍ମ କରିଛି, ତାକୁ ଦିଆଯାଇଛି। ତା' ପ୍ରତି କାହିଁକି ହିଂସା ଆଚରଣ କରାଯାଏ ? ନିଜର ଜୀବନ ନିଜ ପାଇଁ ଯେପରି ଇପ୍‌ସିତ ଧନ, ଠିକ୍ ସେହିପରି ପ୍ରତ୍ୟେକ ପାଇଁ ମଧ, ତଥାପି ? ଖାଦ୍ୟ-ଖାଦକ ସଂପର୍କ। ସାପର ଖାଦ୍ୟ ବେଙ୍ଗ, ବାଘର ଖାଦ୍ୟ ବଣ୍ୟପଶୁ, ଗୋରୁ, ଛେଳି ଯେତେ ପ୍ରକାର ତୃଣଭୋଜୀ, ମଣିଷର ଶାକସବଜୀ ଖାଦ୍ୟ କିନ୍ତୁ ପଶୁପକ୍ଷୀ ନୁହେଁ, ତେବେ ହିଂସାଚରଣ କରେ କାହିଁକି ? ମହାରାଜ ଏହି ଚାରୋଟି ସ୍ଥାନ ମଞ୍ଜୁର କଲେ। ଦ୍ୟୁତକ୍ରୀଡ଼ା ସ୍ଥାନ ମଦ୍ୟପାନ କ୍ଷେତ୍ର-ପରସ୍ତ୍ରୀଗମନ (ବେଶ୍ୟାଳୟ)ଜୀବବଧର ସ୍ଥାନ। ଏହି ଚାରୋଟି ଧର୍ମ ବିବର୍ଜିତ ସ୍ଥାନ। ଚାରି ପ୍ରକାର ସ୍ଥାନ କଲା-ନିତ୍ୟ ଅଧର୍ମ ଯହିଁ ମେଳା। ଦ୍ୟୁତ-କାମିନୀ-ମଦ୍ୟପାନେ-ପ୍ରାଣୀ ମରଣେ ଯେବା ସ୍ଥାନେ'। ପଞ୍ଚମ ସ୍ଥାନଟି ଦିଅନ୍ତୁ। ସୁବର୍ଣ୍ଣ।

'କଳିର ବାକ୍ୟ ଶୁଣି ଚିତ୍ତେ-ସୁବର୍ଣ୍ଣ ଦେଲା ତାର ହସ୍ତେ। ଏ ପଞ୍ଚସ୍ଥାନ ପଞ୍ଚଗୁଣ-ବ୍ରାହ୍ମଣେ ସାବଧାନେ ଶୁଣ। ମିଥ୍ୟା ବସଇ ଦ୍ୟୁତ ମଧେ। କାମ କାମିନୀ ମଧ ସାଧେ। ପ୍ରାଣୀ ମାରଣେ ରଜୋଗୁଣ-ସୁବର୍ଣ୍ଣ ମଧ ରିପୁଗଣ। ଏ ପାଞ୍ଚ ସ୍ଥାନେ ତାରେ ଦେଲା-ଯହିଁ ଅଧର୍ମ ସଙ୍ଗମେଳା'। ଏହିଠାରୁ ଭାଗବତର ସ୍ଥାନ ଆରମ୍ଭ ହେଲା।

ପରୀକ୍ଷୀତ ରାଜସିଂହାସନରେ ବସିଲେ ଏବଂ ଦିନେ ସେ ମୃଗୟା ନିମିତ୍ତ ବନ ମଧରେ ଭ୍ରମଣ କରୁଥିବା ସମୟରେ ତାଙ୍କୁ ତୃଷା ହେଲା। ବିଭିନ୍ନ ସ୍ଥାନରେ ଜଳ ପାଇଁ ଅନେଷ୍ୱଣ କଲେ କିନ୍ତୁ ପାଇଲେ ନାହିଁ। ଏକ ମୁନୀଙ୍କର ଆଶ୍ରମରେ ପହଞ୍ଚିଲେ। ଗୋଟିଏ ବୃକ୍ଷର ଛାୟାରେ ଜଣେ ବ୍ରାହ୍ମଣ ତପସ୍ୟାରତ। ସେ ଥିଲେ ଶୃଙ୍ଗିଋଷି। ରାଜା ତାଙ୍କୁ ଜଳ ନିବେଦନ କଲେ, ମାତ୍ର ଇନ୍ଦ୍ରିୟ-ପ୍ରାଣ-ମନ-ବୃଦ୍ଧିକୁ ନିରୁଦ୍ଧ ସେ ସ୍ୱପ୍ନ-ସୁପ୍ତିପି ଓ ଜାଗରଣ ଏହି ତିନୋଟି ଅବସ୍ଥା ଅତିକ୍ରମ କରି ଚତୁର୍ଥ ଅବସ୍ଥାରେ ପହଞ୍ଚି ଥିବା ହେତୁ ରାଜାଙ୍କ ନିବେଦନ ପ୍ରତି କର୍ଣ୍ଣପାତ କଲେ ନାହିଁ। କିନ୍ତୁ ରାଜା ପରୀକ୍ଷିତ ଚିନ୍ତା କଲେ, ବ୍ରାହ୍ମଣ ଅନୁମାନ ହ୍ୟୟଜ୍ଞାନ ମନେ କରୁଛନ୍ତି। କିନ୍ତୁ,ସେ ସମୟର ଅବସ୍ଥା ସେଭଳି ନ ଥିଲା। ଜଣେ ତୃଷାର୍ତ୍ତ ଯୁଦ୍ଧାର୍ଥୀ କ'ଣ ପାପ ନ କରେ, ବୁଝାମଣାର ଠିକ୍ ନ ରହିବା ହେତୁ, 'ପ୍ରଚଣ୍ଡ

କ୍ରୋଧେ କୋପାନଳେ-ମୃତ ଉରଗ (ସାପକାତି) ଧନୁହୁଲେ-ବ୍ରାହ୍ମଣ ଗଳେ ସ୍ପର୍ଶ ଦେଲା-ତତ୍‌କ୍ଷଣେ ନିଜପୁର ଗଲା'ବ୍ରାହ୍ମଣ ପୁତ୍ର ଏ କଥା ଦେଖି ଚିନ୍ତା କଲା,ସେ ଜଣେ ରାଜା, ଜ୍ଞାନଶୂନ୍ୟ ହୋଇ ଜଣେ ବ୍ରାହ୍ମଣ,ତପସ୍ୟାରତଙ୍କ ପ୍ରତି ଏପରି ବ୍ୟବହାର କରିବା କ'ଣ ଠିକ୍ ? ସଙ୍ଗେ ସଙ୍ଗେ ଅଭିଶାପ ଦେଲା । ବ୍ରହ୍ମ ଅଭିଶାପ, 'ପିତାର କନ୍ଧେ ସର୍ପ ଦେଖି-କୋପେ ଚଞ୍ଚଳ କଲା ଆଖି ତାହାର ଅବିବେକ ।' ବ୍ରାହ୍ମଣମାନଙ୍କ ପ୍ରତି ଏହି କ୍ଷତ୍ରିୟମାନେ କେତେ ନିଷ୍ଠୁର, କେତେବଡ଼ ଅପମାନ ଦିଅନ୍ତି, 'ଏ ପ୍ରାଣୀ ସଂସାରେ ରହିଲେ ଧର୍ମ ନଥିବ ଏଥି ଭଲେ । ଦେଖ ମୋହର ବିପ୍ର ପଣ-କରିଚି ଏଥିର କାରଣ । ଅକର୍ମ ସମ୍ପର୍କ ବିଚାର-ନ୍ୟାୟ କଲା ଯେ ପାମର । ଆଜି ସପତ ଦିନ ଶେଷେ-ତକ୍ଷକ ଆସି ମହାରୋଷେ । ତାର ଶରୀର ବେଗେ ଖାଉ ଏ ପାପୀ ଜଗତେ ନ ରହୁ ।' ତବେ ସେ କିଏ ଥିଲେ ? ରାଜା ପରୀକ୍ଷିତ ଧର୍ମରାଜ ଯୁଧିଷ୍ଠିରଙ୍କ କୁଳରକ୍ଷକ ।

ବ୍ରାହ୍ମଣ ତପସ୍ୟାରୁ ଉଠି ପୁତ୍ରକୁ ଦେଖି ଘଟଣାବଳୀ ଶୁଣି ଦୁଃଖ କଲେ । ଯାହା ବ୍ରାହ୍ମଣର କାର୍ଯ୍ୟ ଅର୍ଥାତ୍ ଉଚ୍ଚବର୍ଗର ନିମ୍ନବର୍ଗଙ୍କ ପ୍ରତି ସହାନୁଭୂତିଶୀଳ ହେବା ପରିବର୍ତ୍ତେ ନିଷ୍ଠୁର ପରାୟଣ ହେବା ଅକର୍ତ୍ତବ୍ୟ । ଯେ ଅଳ୍ପ ସାମାନ୍ୟ ଅପରାଧିତା ପ୍ରତି ଏତେ ବଡ଼ ଦଣ୍ଡ ? ବ୍ରାହ୍ମଣ ଜନ୍ମ ଧନ୍ୟ, ଏହା ଭଗବାନଙ୍କ ଅବଦାନ, ମନ୍ତ୍ର ମଧ ଭଗବାନଙ୍କ ମୁଖ ନିସୃତ ଦାନ, ତ'ର ଯଥେଚ୍ଛାଚାର ବ୍ୟବହାର ହାସ୍ୟାସ୍ପଦଜନକ । ଛୁରୀଟାଏ ପାଖରେ ଅଛି, ତାହାର ବ୍ୟବହାର କାକୁଡ଼ିକାଟିବାରେ ଲାଗେ । ମଣିଷକୁ ହାଣି ଦେବାରେ ମଧ ସାହାଯ୍ୟ କରେ, ତେବେ ଛୁରୀର ଉତ୍ତମ ବ୍ୟବହାର କ'ଣ ? ' ଅଳ୍ପ ଅପରାଧେ ତୁହି-ଦୁର୍ବୁଦ୍ଧି ହୋଇଲୁ କିମ୍ପାଇ । ଯାହାର ଭୁଜ ଆଶ୍ରେ କରି ଧନ-ସମ୍ପଦ-ସୁଖ ଶୀରି । ପ୍ରଜାଏ ସୁଖେ ଯେ ବଞ୍ଚନ୍ତି-କେ ଅଛି ତାର ଦ୍ରୋହଚିନ୍ତି । ବିଷ୍ଣୁର ଅଂଶେ ନରପତି-ଜନମୀ ମେଦିନୀ ପାଳନ୍ତି । ଏବେ ରାଜାର ଅନ୍ତେ ମହୀ-ଚଉର୍ଯ୍ୟ ବଳେ ଦର୍ପବହି । ଧନ ହରିବେ ଅନ୍ୟୋ ଅନ୍ୟୋ-ପ୍ରଜା ପଶିବେ ଘୋର ବନେ । ରାଜାର ଅପରାଧ ଏତେ ବଡ଼ ନଥିଲା କିନ୍ତୁ ତା' ପ୍ରତିଦଣ୍ଡଟା ଯଥେଷ୍ଟ ଅଧିକ ହେତୁ ରାଜା ବିନୁ ରାଜ୍ୟର ଅବସ୍ଥା ଅତ୍ୟନ୍ତ ଅବହେଳିତ ହେବ । ଧର୍ମ ଛାଡ଼ି ଚାଲିଯିବ । 'କ୍ଷୁଧା ତୃଷରେ ବୁଲିବନେ ମିଳିଲା ମୋହାର ଆଶ୍ରମେ । ତାହାକୁ ଆସ୍ଥା ତୁ ନ କଲୁ ବିଶେଶେ ଘୋର ଶାପ ଦେଲୁ ।' ଯଦି କେହି ଜଣେ କ୍ଷୁଧାର୍ଥୀ ଆଶ୍ରୟୀ ହେବାକୁ ଚାହେଁ, ତା' ପ୍ରତି କର୍ତ୍ତବ୍ୟ କ'ଣ ? 'ଅଳ୍ପ ଦୋଷେ ତୁ ବାଳକ-ମୋହାର ମନେ ଦେଲୁ ଶୋକ । ଏମନ୍ତ ମନେ କୃଷ୍ଣଧାୟୀ ବ୍ରାହ୍ମଣ ବୋଲେ ତ୍ରାହି ତ୍ରାହି ।' ହରିବୋଲ ।

ଏହିଠାରେ ଆମେ ଆମର ପ୍ରଚଳିତ ସାମାଜିକ ଚିତ୍ର ଦେଖିବା । କଳି-ଝଗଡ଼ା-ମର୍ଡର-ଆତ୍ମାହୁତି-ବ୍ୟଭିଚାର-ଇତ୍ୟାଦି ଇତ୍ୟାଦି କାହିଁକି ହୁଏ ? । କାମ-ମିଥ୍ୟା-ଚୋରି-ବର୍ବରତା-ଅବିଶ୍ୱାସ-ଅଧର୍ମ-ଅଲକ୍ଷ୍ମୀ-କୂଟ-କପଟ-କଳହ-ଅହଂକାର ଲୋକମାନଙ୍କ ମଧରେ ବ୍ୟାପି ଚାଲିଛି । ଏହି ୫ଟି ସ୍ଥାନ ପାଇଁ ।

ପ୍ରତିଦିନର ଖବରକାଗଜ କହେ ବଧୂହତ୍ୟା-ବଧୂ ପ୍ରତି ଅମାନୁଷିକ ଯନ୍ତ୍ରଣା-ବାଳକ ବାଳିକାଙ୍କ ସହିତ ଅପ୍ରାକୃତ ଜବରଦସ୍ତ ଯୌନ କାର୍ଯ୍ୟକଳାପ-ପ୍ରେମିକ, ପ୍ରେମିକାଙ୍କର ଆତ୍ମହତ୍ୟା-ନଗ୍ନ ଫଟୋ ଉତ୍ତୋଳନ-କଳାଧନ-ପକେଟମାରୁ-କିଳାପୋତାଇ-ଜେଲଖାନାରେ ସ୍ଥାନର ଅଭାବ । ଧର୍ମଶୀଳ ରାଜା ଲୋକନାୟକ-ଗୁରୁମାନେ ଏହି ପାଞ୍ଚୋଟି ସ୍ଥାନ ପ୍ରତି ଆଦୌ ଆସକ୍ତ ହେବା ଉଚିତ ନୁହେଁ, କିନ୍ତୁ ଆମ ରାଜାମାନେ କ'ଣ କରୁଛନ୍ତି ? ସେମାନେ ଏତେ କଳାଧନ ସଂଗ୍ରହ କରୁଛନ୍ତି ଯେ, ଚାରିଆଡେ ରାଣୀମୟ । କାରଣ ରାଜନୀତି ।

ମନୁଷ୍ୟ ଯେତେବେଳେ କ୍ରୋଧର ବଶବର୍ତ୍ତୀ ହୁଏ, ସେତେବେଳେ ସେ ଦିଗହରା ହୋଇ କିଛି ଗୋଟିଏ ଅକର୍ମକୁ ଉଚିତ କର୍ମ ବୋଲି ଭାବେ ଏବଂ କରେ । ରାଜା ପରୀକ୍ଷିତ ଯେପରି ସୀମାଲଂଘନ କରିଛନ୍ତି, କିନ୍ତୁ ନେଡିଗଡ଼ କହୁଣୀକୁ ବହି ଯାଇଛି । ବ୍ରହ୍ମ ଅଭିଶାପ କେବେ ହେଲେ ମୂଲ୍ୟହୀନ ନୁହେଁ, ଏ କଥା ଋଷି ବୁଝିଛନ୍ତି ଏବଂ ରାଜା ମଧ ବୁଝିଛନ୍ତି ଏବଂ ଭବିଷ୍ୟତ ପନ୍ଥା ନିର୍ଣ୍ଣୟ କରିଛନ୍ତି । ସପତ ଦିନ କୋପାନଳେ-ରାଜାଙ୍କୁ ଦଶିଂବ ଏ ବଳେ । ଏମନ୍ତ ଜନ ମୁଖୁଁ ଶୁଣି-ମନ ଆନନ୍ଦ ନୃପମଣି । କହଇ ମୋତେ ସର୍ପଖାଉ-ଏ ମୋର କୁଳେ ପାପ ନୋହୁ । ଯେମନ୍ତେ ଇହ ପର ଲୋକେ ମରଣେ ନ ପଡଇ ଦୁଃଖେ ।' ଏ ଥିଲା ରାଜା ପରୀକ୍ଷିତଙ୍କର ହୃଦୟର ବାର୍ତ୍ତା । ବ୍ରାହ୍ମଣ ଋଷିଙ୍କର ଆଶ୍ୱାସନା ବାଣୀ, ' ଅଳ୍ପ ଦୋଷେ ତୁ ବାଳକ-ମୋହର ମନେ ଦେଲୁ ଶୋକ । ଏମନ୍ତେ ମନେ କୃଷ୍ଣ ଧାୟୀ-ବ୍ରାହ୍ମଣ ବୋଲେ ତ୍ରାହି ତ୍ରାହି । ଭୋ ନାଥ କରୁଣା ସାଗର-ବାଳକ ଦୋଷ କ୍ଷମାକର । କିନ୍ତୁ ଆମର ପ୍ରଚଳିତ ସମାଜରେ 'କ୍ଷମା' ନାହିଁ । (ହରିକଥା-୨ ପରେ) ।

'ହରେକୃଷ୍ଣ ହେରେକୃଷ୍ଣ କୃଷ୍ଣ କୃଷ୍ଣ ହେରେହେରେ ,ହରେରାମ ହରେରାମ ରାମରାମ ହରେ ହରେ ।'

## ହରିକଥା-୨

ପରୀକ୍ଷିତ ମହାରାଜାଙ୍କୁ ବ୍ରହ୍ମ ଅଭିଶାପ ହେଲା ଯେ ସେ ସାତଦିନ ପୂର୍ଣ୍ଣ ହେବା ମାତ୍ରେ, ତକ୍ଷକ ଦଂଶନରେ ମୃତ୍ୟୁ ବରଣ କରିବେ । ତେଣୁ ସେ ତାଙ୍କ ପୁତ୍ର ଜନ୍ମେଜୟଙ୍କୁ ରାଜ ସିଂହାସନରେ ବସାଇ ରାଜ୍ୟ ଶାସନଭାର ସମର୍ପଣ କଲେ । ସେ ବୁଝିପାରିଲେ ନିଜର

ଦୋଷ, ଏକାନ୍ତେ ବସି ବିଚାରର-ନିନ୍ଦିତ କର୍ମ କଲି ମୁହିଁ । ଅନ୍ୟାୟ ପ୍ରାଣୀଙ୍କ ବେଭାର କୁକର୍ମ କଲି ଏ ସଂସାର ।ନିର୍ଦ୍ଦୋଶ ବ୍ରାହ୍ମଣର ଗଳେ-ସର୍ପ ଆରୋପି ଧନୁ ହୁଳେ । ଏ ପାପ ବିନାଶନ ହେତୁ-ଦେଖେ ବିଧାତା ମୋତେ ଚିନ୍ତୁ । ନିଜର ଭୁଲ ପାଇଁ ନିଜେ ମଣିଷ ସାନ୍ତ୍ୱନା ପାଏ ସିନା କିନ୍ତୁ ପାପ ଦୋଷ ଛାଡେ ନାହିଁ ।ଫଳ ଭୋଗ କରିବାକୁ ପଡେ । ତେବେ ମୁକ୍ତିର ପଥ ଅନ୍ୱେଷଣ କରିବାକୁ ପଡେ । ପରେ ପରୀକ୍ଷିତ ମହାରାଜ ସଂସାର ତ୍ୟାଗୀ ହୋଇ ଜଙ୍ଗଲ ମଧକୁ ପ୍ରବେଶ କଲେ । ଏହି ସଂସାରଟି ଦୁଃଖପୂର୍ଣ୍ଣ । ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି ସବୁକିଛି ମଧ ଯନ୍ତ୍ରଣାମୟ । ଏହା ପ୍ରତ୍ୟେକଙ୍କ ପାଇଁ ମଞ୍ଜୁର ହୋଇଛି । ଶୈଶବ-ଯୌବନ-ପ୍ରୌଢ ପରେ ଉର୍ଦ୍ଧମାରେ ଜରା ଅର୍ଥାତ ବାର୍ଦ୍ଧକ୍ୟ । କିନ୍ତୁ ବ୍ୟତିକ୍ରମ ହୁଏ କାହିଁକି ? ବାର୍ଦ୍ଧକ୍ୟ ଶରୀରକୁ ଶୋଷଣ କରିଦିଏ ସୌନ୍ଦର୍ଯ୍ୟ,ପୁଣି ତେଜ-ବୀର୍ଯ୍ୟ ଶେଷରେ ଶକ୍ତି । ସଂସାର ତ୍ୟାଗୀ ଅନେକ କିଛି ଭାବୁଥାଏ । କାରଣ ଶେଷଟି କେଉଁଠି ? ପହଞ୍ଚିଲେ ଗଙ୍ଗାନଦୀ ତୀରରେ ଓ ଅବସ୍ଥାନ କଲେ । ତାଙ୍କୁ ଭେଟିବା ପାଇଁ ଋଷିଗଣ ଉପସ୍ଥିତ ହେଲେ । ' ଅତ୍ରି-ବଶିଷ୍ଠ-ରିଷ୍ଟନେମି ଚ୍ୟବନ-ଭରଦ୍ୱାଜ-ଘେନ । ଭୃଗୁ-ଅଙ୍ଗିରା-ପରାଶର,ଉତଥ୍ୟ-ଗାଧିର କୁମର । ଇନ୍ଦ୍ର-ପ୍ରମଦ-ମେଧ ନିଧି ଦେବଳ ଅଷ୍ଟକ୍ଷେଣ ଯଦି ସୁବାହୁ ଉରଦ୍ୱାଜ ଶିଷ୍ୟ ଗୌତମ,ମୈତ୍ରେମ,କବଶ । ପିପଳାୟନ ଔର୍ବ ମୁନି-ବ୍ୟାସ ନାରଦ କୁମ୍ଭ ଯୋନି । ସକଳ ଋଷି ଏକ ମେଳେ,ମିଳିଲେ ଜାହ୍ନବୀର କୂଳେ । ଏମାନଙ୍କୁ ପାଇ ପରୀକ୍ଷିତ ଖୁବ ଆନନ୍ଦିତ ହେଲେ । ମହାରାଜା ଅତୀତର ଘଟଣାବଳୀକୁ ବର୍ଣ୍ଣନା କଲେ ଏବଂ ଏକଥା ମଧ ଜାଣନ୍ତି ଯେ, ସାଧୁ ସଙ୍ଗେ କରେ ସେ ତରେ ଏ ଭବ ତରଙ୍ଗ" । କିନ୍ତୁ ତାଙ୍କୁ ଅଜଣା ଥିଲା । କହ ଜୀବନ ଯିବାକାଳେ କିବା ସାଧିବି ମହୀତଳେ । କିବା ଶୁଣିବି କର୍ଣ୍ଣପଥେ-ସ୍ମରଣ କି କରିବି ଚିତ୍ତେ । କିବା ବଚନ ଉଚାରଣ ଭଜିବି କାହାର ଚରଣ' । ସର୍ବ ଋଷିଗଣଙ୍କ ସମ୍ମୁଖରେ ଶୁକଦେବଙ୍କୁ ଏ ଥିଲା ପରୀକ୍ଷିତଙ୍କର ପ୍ରଶ୍ନ ।

ବାସ୍ତବିକ ଏଠାରେ ଗୋଟିଏ ପ୍ରଶ୍ନ ଉଠେ, ଜୀବନରେ ପ୍ରାରମ୍ଭ ହେଉଛି ଜନ୍ମ, ପୁଣି ଶେଷ ହୁଏ ମୃତ୍ୟୁ ଅର୍ଥାତ ଜଣେ ଜନ୍ମ ହୋଇଛି କାହିଁକି,ନିଶ୍ଚୟ ଉତ୍ତର ହେବ ମରଣ ପାଇଁ । ଶେଷ ପର୍ଯ୍ୟାୟରେ ଜୀବନର ଶେଷ ଲକ୍ଷ୍ୟ କଣ ? କର୍ତ୍ତବ୍ୟ କଣ ? ଯେଉଁ ଲୋକ ମରିବାକୁ ଯାଉଛି ତା ପକ୍ଷରେ ସର୍ବଥା କେଉଁ କର୍ମକୁ ବିଶୁଦ୍ଧ ବୋଲି ଧରାଯିବ ? ପ୍ରଭୁ, ଯାହା ଶୁଣିବାର ଯୋଗ୍ୟ- ସ୍ମରଣ କରିବାର ଯୋଗ୍ୟ-ଭଜନ କରିବାର ଯୋଗ୍ୟ- ପୁନରାୟ ଯାହା ଏ ସବୁର ଅଯୋଗ୍ୟ-ତାହା କୁହନ୍ତୁ ।

ଅଭିଶାପ କଣ ? ଅଭିଶାପ ଶବ୍ଦର ସଂଜ୍ଞା ନିରୁପଣ କେଉଁଠାରେ ହୋଇଛି କି ?

କିନ୍ତୁ, ଏହା ଏକ ଭୟଙ୍କାର ମାରମୃକ ହୃଦୟର କୋପାନଳ ଆଗ୍ନେୟାସ୍ତ୍ରେ, ଏହା ବାକସିଦ୍ଧି କରିଥିବା ଋଷିଙ୍କ ଦ୍ୱାରା ପ୍ରୟୋଗ ହୋଇଥାଏ ବା ପୂର୍ବକାଳରେ ବ୍ରାହ୍ମଣ ମାନଙ୍କ ଦ୍ୱାରା ପ୍ରୟୋଗ ହୋଇଥିବାର ଶୁଣିବାକୁ ମିଳେ ତେଣୁ ଏମାନଙ୍କୁ ତତକାଳୀନ ମାନବ ସମାଜ ଭୟ କରୁଥିଲା - ଭକ୍ତି କରୁଥିଲା ଏବଂ ଶ୍ରେଷ୍ଠତ୍ୱ ସ୍ଥାନରେ ରଖି ପୂଜା କରୁଥିଲା ଏବଂ ଏହାକୁ ସାଧାରଣ ବ୍ୟବହାରରେ ପ୍ରୟୋଗ କରାଯାଉନଥିଲା ।

ଆଜି କାଲି ବନ୍ଧୁକ- ବମ ଯେପରି ଧ୍ୱଂସକାରୀ ଅସ୍ତ୍ର ହିସାବରେ ବ୍ୟବହାର କରାଯାଏ ଏବଂ ଦେଶରକ୍ଷା ବାହିନୀ ବା ପୋଲିସି ବ୍ୟବହାର କରନ୍ତି କାରଣ ତାହା ଶାନ୍ତିରକ୍ଷା ପାଇଁ ଉଦିଷ୍ଟ । ସେହିଭଳି ଋଷି- ବ୍ରାହ୍ମଣଙ୍କ ସ୍କନ୍ଦରେ ଥିବା ବେଦ ପଇତା ସଙ୍ଗେ ସମାଜ । ଏହା ମଙ୍ଗଳ ପାଇଁ ବା ଆଶୀର୍ବାଦ ପାଇଁ ଅବଶ୍ୟକ,ପୁଣି ଅଭିଶାପ ପାଇଁ ମଧ ଆବଶ୍ୟକ । ଏହାଙ୍କର ବ୍ରହ୍ମ ବାଣ ଠୋ ଠା ଠି ହୋଇ ଶୀଘ୍ର ଫୁଟେ, ଅନ୍ୟମାନଙ୍କର ବାଣ ବେଳେ ବେଳେ ଫୁରଷି ଯାଏ ଓ ଠିକ୍ କ୍ଷେତ୍ରରେ କାମ ଦିଏନାହିଁ ବୋଲି ଏମାନେ ସମାଜରେ ଆଗୁଆ-ଛାମୁଣ୍ଡିଆ, ଦେଖନ୍ତୁ ବ୍ରାହ୍ମଣ ବସି ତପସ୍ୟା କରୁଥିଲେ । ରାଜା ପରୀକ୍ଷିତ ତାଙ୍କ ଗଳାରେ ଗୋଟିଏ ସାପକାଟି ପକାଇ ଚାଲିଯିବାରୁ ତାଙ୍କ ପୁତ୍ର କିଛି ଅପେକ୍ଷା ନ କରି ହଠାତ୍ ଗୋଟିଏ ବ୍ରହ୍ମାସ୍ତ୍ର ଛାଡିଦେଲେ । 'ଆଳୁଁ ସପତ ଦିନ ଶେଷେ,ତକ୍ଷାକ ଆସି ମହାରୋଷେ । ତାର ଶରୀର ବେଗେ ଖାଉ-ଏ ପାପୀ ଜଗତେ ନଥାଉ ।' ଏ ହେଉଛି ପୁଅର କ୍ରୋଧ । କ୍ରୋଧ ଉଭୟଙ୍କର କ୍ଷତିକରେ । ' ବ୍ରାହ୍ମଣ ଶାପ କୋପାନଳେ-ଏ ମୋର ନିଜ କର୍ମଫଳେ ।' ପିତାର ମଧ ମର୍ତ୍ତବ୍ୟର ବାହାରେ ରକ୍ଷା କରିପାରୁ ନାହାଁନ୍ତି । 'କ୍ଷୁଧା ତୃଷାରେ ବୁଲିବନେ ମିଳିଲା ମୋହର ଆଶ୍ରମେ । ତାହାକୁ ଆସ୍ଥା ତୁ ନକଲୁ- ବିଶେଷେ ଘୋର ଶାପ ହେଲୁ" ? ହେଉ ହେଉ ଉପାୟ କଣ ? ଏମନ୍ତେ ମନେ କୃଷ୍ଣଧାୟୀ-ବ୍ରାହ୍ମଣ ବାଳକ ଦୋଷ କ୍ଷମା କର । ବ୍ରାହ୍ମଣ ବୋଲେ ତ୍ରାହି ତ୍ରାହି । ଭୋ ନାଥ କରୁଣା ସାଗର ବାଳକ ଦୋଷ କ୍ଷମା କର । ବ୍ରାହ୍ମଣ-ତପସୀ କେତେ ସ୍ୱାର୍ଥପର ? ପୁଅକୁ ରକ୍ଷା କରିବା ପାଇଁ ଭଗବାନ କୃଷ୍ଣଙ୍କୁ ପ୍ରାର୍ଥନା କଲାବେଳେ ଦୋଷୀ ମହାରାଜ ପରୀକ୍ଷିତଙ୍କ ପାଇଁ ନୀରବ ରହିଛନ୍ତି । କାରଣ କ୍ରୋଧ ଉଭୟଜଣଙ୍କର କ୍ଷତିକାରକ ଗୁଣ । ଶ୍ରୀକୃଷ୍ଣ ଚରଣ ତୁଳସୀ ପାଦ ଉଦକରେ ମିଶି । ଅତି ପବିତ୍ର ବହେ ବାରି-ଉଭୟ ଲୋକ ପାପ ହରି' କୃଷ୍ଣଙ୍କୁ ଦିଅ ତୁଳସୀରେ ମଦାଳସୀ, କୃଷ୍ଣକୁ ଦିଅ । ହରିବୋଲ ।

ବ୍ରାହ୍ମଣ ପୁତ୍ର କାହିଁକି ମହାରାଜ ପରୀକ୍ଷିତଙ୍କ ଉପରେ କ୍ରୋଧ ବର୍ଷଣ କଲା ? ସଂସାର ଧର୍ମ ଯେ ପାଳକ-ଦେଖି ତାହାର ଅବିବେକ । ଶ୍ୱାନର ପ୍ରାୟ ଚିନ୍ତାକଲା-ହେଲେ ଏ

ବିପ୍ରକୁ ଲଘିଂଲା । ବ୍ରାହ୍ମଣେ ଛନ୍ତି ଯାକୁ ବରି-ସକଳ ପାଗ ଆଦିକରି । ଶ୍ୱାନର ପ୍ରାୟେ ଦୂରେ ଥାନ୍ତି-ସେ ଭାଣ୍ଡ ଭୋଜନ କରନ୍ତି । ବ୍ରାହ୍ମଣ କ୍ଷତ୍ରିୟଙ୍କୁ ବରି-ଯଜ୍ଞରେ ଦ୍ୱାରପାଳ କରି" । କିଛିପଦେ କଥା ନ କହି ଗର୍ବରେ" ସେ ଯେଣୁ ନିଜ ପୁରେ ଗଲା ତେଣୁ ଏ ଅଜ୍ଞାନୀ ହୋଇଲା । ତେଣୁ ସେ ରାଜା ହେବାର ଯୋଗ୍ୟତା ନାହିଁ । ଅକର୍ମ ସମ୍ପଦ- ଅନ୍ୟାୟ କଲା ଯେ ପାମର । ଆଜୁଁ ସପତ ଦିନ ଶେଷେ-ତକ୍ଷକ ଆସି ମହାରୋଷେ । ତାର ଶରୀର ବେଗେ ଖାଉ-ଏ ପାପୀ ଜଗତେ ନଥାଉ । ରାଜା ପରୀକ୍ଷିତ ଧର୍ମରାଜାଙ୍କ କୁଳରେ ଜାତ ହୋଇ ଏଭଳି ଅନ୍ୟାୟ କଲେ କାହିଁକି ? ମନେ ବିଚାରେ ନୃପରାଜ- ଅବଜ୍ଞା କଲା ମୋତେ ଦ୍ୱିଜ । କ୍ଷୁଧା ତୃଷାରେ ଜଳେ ମନ-କ୍ଷଣେ କ୍ଷଣକେ ଅଚେତନ । ପ୍ରଚଣ୍ଡ କ୍ରୋଧେ କୋପାନଳେ-ମୃତ ଉରଗ ଧନୁ ହୁଳେ । ବ୍ରାହ୍ମଣ ଗଳେ ସ୍ୱର୍ଶ ହେଲା ତକ୍ଷଣେ ନିଜ ପୁରେ ଗଲା । ଏତେ ଅବଜ୍ଞା ନର ଦେହେ-କ୍ଷତ୍ରିୟ ଜନ୍ମେ କେବା ସହେ' ସମାଧାନ-ରାଜାଙ୍କୁ ଫାଶି ଖୁଣ୍ଟ । ରାଷ୍ଟ୍ରପତି ଦସ୍ତଖତ କରିଦେଲେ । ସମୟ ମଧ ଧାର୍ଯ୍ୟ କରିଦେଲେ । ଆଉ ରହିଲା ସାତଦିନ । ଶେଷ ଇଚ୍ଛା କଣ ? ମରଣ ଯାର ସାଧୁ ସଙ୍ଗେ-ସେ ତରେ ଏଭବ ତରଙ୍ଗେ । କହ ଜୀବନ ଯିବା କାଳେ କିବା ସାଧିବି ମହୀତଳେ । କିବା ଶୁଣିବି କର୍ଣ୍ଣ ପଥେ-ସ୍ମରଣ କି କରିବି ଚିତ୍ତେ । କିବା ବଚନ ଉଚ୍ଚାରଣ-ଭିଜିବି କାହାର ଚରଣ ।' ହେ ମହାପୁରୁଷ ଶୁକଦେବ । ଏତିକି ଦୟାକରି କୁହନ୍ତୁ, ଯାହା ଶୁଣିବାର ଯୋଗ୍ୟ-ଜପର ଯୋଗ୍ୟ ସ୍ମରଣର ଯୋଗ୍ୟ-ଭଜନର ଯୋଗ୍ୟ ।

'ଜଗନ୍ନାଥ ହୋ କିଛି ମାଗୁ ନାହିଁ ତୋତେ, ଧନ ମାଗୁନାହିଁ-ଜନ ମାଗୁ ନାହିଁ ମାଗୁଛି ଶରଧା ବାଲିରୁ ହାତେ । ଆଉ ଦରଶନ ନ ଲଭେ ନୟନ । ଏକା ତୋର ଦେଖା ବିନା ଶୁଣିବାକୁ କାନ ନ ଇଚ୍ଛଇ ଆନ ତୋହ ଚରିତେ କାମନା । ରମନା ନ ବାଞ୍ଛେ ଗ୍ରାମ୍ୟ ଗୀତ ଗାଇବାକୁ ରଜନୀ ଦିବସ । ତୋର ନାମାବଳୀ, କେବଳ ଶଙ୍ଖାଳି ହୋଇଥାଉ ପୀତବାସ । ନାସା ମୋର ତୃପ୍ତି ନ ଲଭଇ ଆନ ସୁବାଦ ଦ୍ରବ୍ୟ ଆଘ୍ରାଣେ । ତୋର ଛଡାମାଳ ତୁଳସୀ କୁସୁମ ଚନ୍ଦନେ କର୍ପୁର ଧାନ । ମୋହ ହସ୍ତ ଆଙ୍ଗୁଳି ରାମ ବନମାଳୀ ହରେକୃଷ୍ଣ ଜପୁଥାଉ । ବୋଲେ ବନମାଳୀ ମୋ ବେନି ଚରଣ ତୋ ତୀର୍ଥ ଭ୍ରମଣେ ଯାଉ ।"ହେ ଜଗନ୍ନାଥ କିଛି ମାଗୁନାହିଁ ତୋତେ । ଏ ଥିଲା ରାଜା ପରୀକ୍ଷିତଙ୍କର ଜୀବନର ଶେଷ ନିବେଦନ । କ୍ରୋଧର ରୂପ କିପରି ଈର୍ଷା, ହିଂସା, ରାଗ, ପରଶ୍ରୀକାତରତା, ଲୋଭ, ମୋହ, ଜିହ୍ୱା ଲାଳସା, ମାନସିକ ଅଶାନ୍ତି, ଗର୍ବ, ଦମ୍ଭ, ଚୁଗୁଲି ଇତ୍ୟାଦି । ଏଗୁଡିକ ଭୟଙ୍କର ବ୍ୟାଧି । ଏହି ବ୍ୟାଧିଗ୍ରସ୍ତ ମଣିଷ ଅନ୍ୟର ଯେତିକି କ୍ଷତିକରେ, ନିଜର ବହୁତ ଗୁଣ ଅଧିକତର କ୍ଷତିକରେ କିନ୍ତୁ

ଜାଣିପାରେ ନାହିଁ। କାରଣ ଗର୍ବ ବୁଭୁକ୍ଷିତାନାମ କିଂ ନ କରୋତି ପାପଂ। ଭୋକିଲା ଅଭାବଗ୍ରସ୍ତ ଲୋକର ଲେଲିହାନ ଚକ୍ଷୁ ପାଖ ଲୋକ ଉପରେ ପଡେ ଏବଂ କ୍ଷୀଣ ଜନାଃ ନିଷ୍କରୁଣା ଭବନ୍ତି। ଯାହାର ଶରୀର ଦୁର୍ବଳ ରୋଗଗ୍ରସ୍ତ, ତା ପାଖରେ ଦୟା-କରୁଣା ନ ଥାଏ। ସ୍ୱାର୍ଥ ହାସଲ ପାଇଁ ଏମାନଙ୍କର ବିବେକ ମୃତ । ପ୍ରଚଳିତ ସମାଜରେ ଏଭଳି ମାନସିକ ରୋଗୀ ଯଥା ବିଧବା, ଅପୁତ୍ରିକ-ଦରିଦ୍ର-ରୋଗୀ'କାନକୁହା, ଚୁଗୁଲିଆ ଲୋକେ ଅତ୍ୟନ୍ତ କ୍ରୋଧୀ। ଅଧୈର୍ଯ୍ୟ ହୋଇ ଅନ୍ୟର ଅସହ୍ୟ କ୍ଷତି କରିଥାନ୍ତି।

ଅଭିଶାପ-ଭଗବତ ଭକ୍ତମାନ ତିରଷ୍କୃତ-ବଞ୍ଚିତ-ଲାଞ୍ଛିତ ଅବହେଳିତ ବା ତାଡିତ ହେଲେ ମଧ ଶକ୍ତି ଥାଇ ତାର ପ୍ରତିକାର କରନ୍ତି ନାହିଁ। ସମୁଦ୍ର ସ୍ନାହାନ ବେଳେ ଛୋଟ ଛୋଟ ଲହଡିକୁ ହେୟଜ୍ଞାନ କରାଯାଏ କିନ୍ତୁ ବଡ ବଡ ଲହଡି ପାଇଁ ମୁଣ୍ଡ ନୁଆଁଇ ଦିଆଯାଏ, ତାହା କରଣୀୟ। ବାସ୍ତବିକ ରାଜା ଅପରାଧୀ ଏବଂ ଅପରାଧ ସ୍ୱୀକାର କରିଛନ୍ତି। ତାଙ୍କର କ୍ରୋଧ-ଗର୍ବ ହ୍ୟତଜ୍ଞାନ ହୀନମନ୍ୟା ପାଇଁ ମଞ୍ଜୁର କରାଯାଇ ବିଧି ନିର୍ଣ୍ଣୀତ ଦଣ୍ଡକୁ ସ୍ୱୀକାର କରିଛନ୍ତି। କିନ୍ତୁ ଅପରପକ୍ଷରେ, ଏହିପରି ପୁତ୍ରକୃତ ଅପରାଧ ପାଇଁ ତ ମହର୍ଷି ଅନୁତପ୍ତ ହେଲେ ନାହିଁ। କିନ୍ତୁ ରାଜା କରିଥିବା ଅପରାଧ ପାଇଁ ଅନୁତପ୍ତ ହେଲେ ନାହିଁ। କିମ୍ବା ଚିନ୍ତା କରି ନାହାନ୍ତି। ସାଧୁ ଲୋକର ସ୍ୱଭାବ ହେଉଛି, କେହି ଯଦି ତାଙ୍କୁ ସୁଖ ଦିଏ ବା ଦୁଃଖ ଦିଏ ସେଥିପାଇଁ ସେ ବିବ୍ରତ ହୁଅନ୍ତି ନାହିଁ। ଆତ୍ମା ସକଳ ଗୁଣାତୀତ। ସାଧୁ ହିଁ ସ୍ଥିତପ୍ରଜ୍ଞା। ରାଜା ପରୀକ୍ଷିତ ଥିଲେ ସାଧୁ ପ୍ରକୃତିର ଭଗବାନଙ୍କ ଭକ୍ତ ତେବେ ସାଧୁ ପୁରୁଷର ପ୍ରକୃତି କିପରି ?

ଭଗବାନଙ୍କ ଭକ୍ତ ଦୟାଳୁ-କାହାରି ପ୍ରତି ଦ୍ରୋହ ଆଚରଣ କରେ ନାହିଁ। କ୍ଷମାଶୀଳ-ସତ୍ୟ ହିଁ ତାର ବଳ-ଅସୂୟାଭାବ ନଥାଏ-ସମଦର୍ଶୀ-ଉପକାରୀ-ଜିତେନ୍ଦ୍ରିତ-ମଧୁର ସ୍ୱଭାବ ଶୁଚିମାନ୍ତ-ନୀରିହ-ଶାନ୍ତ-ସ୍ଥିର-ନିର୍ବିକାର-ଧୈର୍ଯ୍ୟଶୀଳ-କ୍ଷୁଧା-ପିପାଷା-ଶୋକ-ମୋହ-ଜରାଶୂନ୍ୟ ମାନ ଅଭିମାନ ନଥାଏ-ଅନ୍ୟକୁ ସମ୍ମାନ ଦିଏ-ପ୍ରାଣୀଙ୍କ ପ୍ରତି ଦୟାଳୁ ଇତ୍ୟାଦି ବହୁ ଗୁଣର ଅଧିକାରୀ ଯେ ସେ ସାଧୁ ପୁରୁଷ ଏବଂ ଏଗୁଡିକ ତାଙ୍କର ଲକ୍ଷଣ। ଶ୍ରୀମଦ୍ ଭାଗବତର ପ୍ରଥମ ସ୍କନ୍ଦରେ 'ହରିକଥା' ଆରମ୍ଭ ହୋଇଛି। ଶୁକଦେବ ମହାରାଜା ପରୀକ୍ଷିତକୁ ଭାଗବତ ପୁରାଣରେ କିପରି ଭାବରେ ହରିକଥା ବର୍ଣ୍ଣନା କରାଯାଇଛି ଏବଂ ତାଙ୍କର ମୃତ୍ୟୁକାଳୀନ ନିବେଦନ ଶୁଣାଉଛନ୍ତି। ଭାଗବତ କେବଳ ପୁରାଣ ନୁହେଁ, ଇତିହାସ-କିମ୍ବଦନ୍ତୀ-ସାହିତ୍ୟ-ଭୂଗୋଳ-ବିଜ୍ଞାନ-ଗଣିତ ଆଧାତ୍ମିକ ବିଷୟରେ ଶିକ୍ଷା। ଗୁରୁଶିଷ୍ୟ ପରମ୍ପରା ଏହିଠାରୁ ହିଁ ଆରମ୍ଭ ହୋଇଛି। ହଁ, ମାତ୍ର ସାତଦିନ। ତକ୍ଷକ ଆସିବ ଦଂଶନ କରିବ। ସେ

ଦେଖୁଛନ୍ତି ମୃତ୍ୟୁର କକ୍ଷଚ୍ୟୁତ ହେଲାଣି । ଧୀରେ ଧୀରେ ଆସୁଛି । ପହଞ୍ଚିବ, ପୁଣି ଧୈର୍ଯ୍ୟଧରି ଭଗବାନଙ୍କ ଲୀଳାମୃତ ଶ୍ରବଣ ଦ୍ୱାରା ଅସ୍ୱାଦନ କରିବ, ଏହା କେବେ ସାଧାରଣ ଶରୀରଧାରୀ ପାଇଁ ଅସମ୍ଭବ ମାତ୍ର ଅତିମାନବ ପାଇଁ ହିଁ ସମ୍ଭବ ।

୧୮୫୦ ମସିହା କଥା କହୁଛି । ମାଘ ମାସ ଶୁକ୍ଳପକ୍ଷ ପ୍ରତିପଦ ତିଥିଠାରୁ ସପ୍ତମୀ ପର୍ଯ୍ୟନ୍ତ ମହାପୁରୁଷ ନିତ୍ୟାନନ୍ଦ ଗୋସାଇଁଙ୍କ ଜନ୍ମପୀଠରେ ସେହିକାଳରୁ ଏପର୍ଯ୍ୟନ୍ତ ଭାଗବତ ପାରାୟଣ ହୁଏ । ପ୍ରତିପଦର ପୂର୍ବ ଦିବସ ଥିଲା ଅମାବାସ୍ୟା । ନିତ୍ୟାନନ୍ଦ ସର୍ବରଣ ମୋକ୍ଷ ଯଜ୍ଞ ସାରି ପ୍ରତିପଦ ଠାରୁ ସପ୍ତମୀ ପର୍ଯ୍ୟନ୍ତ ଭଗବାନ ଲୀଳା ଶ୍ରବଣ ପରେ ଜନ୍ମପୀଠରୁ ସୂର୍ଯ୍ୟୋଦୟ ପୂର୍ବରୁ ଚିରବିଦାୟ ନେଇ ଅର୍କତୀର୍ଥରେ ସ୍ନାନ କରି ଜଗନ୍ନାଥଙ୍କ ପାଖରେ ଆରତ ଧ୍ୱଂସନର ପ୍ରାର୍ଥନା ଜଣାଇ ଲୀନ ହୋଇଗଲେ (ମହାପୁରୁଷ ନିତ୍ୟାନନ୍ଦ ଗୋସାଇଁଙ୍କ ଜୀବନୀ) । ତାଙ୍କ ଜନ୍ମପୀଠ କେନ୍ଦ୍ରାପଡା ଜିଲ୍ଲା ଆଳି ଥାନା ଅନ୍ତର୍ଗତ ସିଙ୍ଗିରି ଗ୍ରାମରୁ ତକ୍ଷକ (ମୃତ୍ୟୁ)ଗୋଡାଇ ଗୋଡାଇ ନେଇ ମହାକାଳଙ୍କ ନିକଟରେ ଛାଡିଦେଲା । ସେହିଠାରେ ତାଙ୍କର ଆତ୍ମାପୁରୁଷ ଲୀନ ହେଲା ତାହା ଥିଲେ ତାଳପତ୍ର ପୋଥି ବା ଖେଦା । ପାଠକ ଥିଲେ ତାଙ୍କର ନାତି ଶିଶୁ ସାଧକ ସାଧୁ । ଜନ୍ମପୀଠରେ ରହିଗଲା ଏକ ବିରାଟ ହୁଂକାର ଗାଦୀ । ଅନେକ ସ୍ଥାନରେ ଏହିଭଳି କଥା ଶୁଣିବାକୁ ମିଳେ ଯେ ଭକ୍ତ ସେ ଭଗବାନ ଙ୍କର ବାହୁଛାୟାତଳେ ଆଶ୍ରୟ ପାଆନ୍ତି ।

ସାର କଥା ହେଉଛି ମନୁଷ୍ୟ ଧୈର୍ଯ୍ୟଶୀଳ ହେବା ଉଚିତ । ଯେ ଯେଉଁସ୍ଥାନରେ ଆସୀନ ହେଲେ ମଧ କଠୋରତା-ନିଷ୍ଠୁରତା ପ୍ରକାଶ କରିବା କର୍ତ୍ତବ୍ୟ ନୁହେଁ । ପଶ୍ଚାତାପ ବେଳେ ମଧ କଠୋରତା-ନିଷ୍ଠୁରତା ପ୍ରକାଶ କରିବା କର୍ତ୍ତବ୍ୟ ନୁହେଁ । ପଶ୍ଚାତାପ ବେଳେ ନିଜର ଭୁଲ ନିଜେ ସ୍ୱୀକାର କଲାବେଳକୁ ନେଡିଗୁଡ କହୁଣୀକୁ ବୋହି ଯାଇଥିବ । ମନରେ ଆଶଙ୍କା ଅସିବା ହିଁ ପାପ ଯଥା-ଏ ଦୁନିଆରେ କେହି କାହାରି ମିତ୍ର ନୁହେଁ କି ଶତ୍ରୁ ନୁହେଁ କିନ୍ତୁ ବ୍ୟବହାର ଦ୍ୱାରା ଶତ୍ରୁ ବା ମିତ୍ର ହୁଅନ୍ତି । ତଥାପି ମହତ ଜନଙ୍କ କଥା' ଯାହା ହୋଇଛି ଭଲ ହୋଇଛି-ଯାହା ହେଉଛି ଭଲ ହେଉଛି, ଯାହା ହେବ ଭଲ ହେବ-ସମୟର ନିର୍ଦ୍ଦେଶ -ଧୈର୍ଯ୍ୟ ଧର' । ସେ ଜାଣେ 'ଭୁଜ ତଳେ ମୋତେ ରଖ ମହାପ୍ରଭୁ, ବାହୁତଳେ ମୋତେ ଛାର, କି କରି ପାରିବ ଦୁଃଖ । ମହାପ୍ରଭୁ, ଭୁଜତଳେ ମୋତେ ରଖ ।

(ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ହରେରାମ ହରେରାମ ରାମରାମ ହରେହରେ) ।

୧୧

# ହରିକଥା-୩

ମୁନୀ ଶୁକଦେବ ପରୀକ୍ଷିତ ଠାରୁ ଯେଉଁ ତିନୋଟି ପ୍ରଶ୍ନ ଶୁଣିଲେ ଯଥା- ମୃତ୍ୟୁ ବା ଶରୀରରୁ ପ୍ରାଣଗଲା ବେଳେ ପ୍ରାଣୀର ଶେଷ କର୍ତ୍ତବ୍ୟ କ'ଣ ? ଭଗବାନଙ୍କ ନାମ ଶୁଣିବା-ଗୁଣ କୀର୍ତ୍ତନ କରିବା-ତାଙ୍କୁ ସ୍ମରଣ କରିବା । କିନ୍ତୁ ମନୁଷ୍ୟ ମାନଙ୍କର କର୍ତ୍ତବ୍ୟ କ'ଣ ଏବଂ ଅକର୍ତ୍ତବ୍ୟ କ'ଣ, ଏହି ପ୍ରଶ୍ନୋତ୍ତରର ହିଁ ବାରଶସ୍କନ୍ଧ ଭାଗବତ । ସମୟ ସାତଦିନ । ତକ୍ଷକ ନିଶ୍ଚୟ ଆସି ଦଂଶନ କରିବ । ଅଧିକ କିଛି ଦିନ ବିଳମ୍ବପାଇଁ କ୍ଷମା ମିଳିବ ନାହିଁ । ଆଚ୍ଛା, ଏହା ପରୀକ୍ଷିତଙ୍କ ପାଇଁ ଇଚ୍ଛାମୃତ୍ୟୁ କିମ୍ବା ସାଧାରଣ ମୃତ୍ୟୁ ଅଥବା ଅପମୃତ୍ୟୁ ? କିନ୍ତୁ ଶୁକଦେବ ଅତ୍ୟନ୍ତ ପ୍ରୀତ ହେଲେ କାରଣ ପୂର୍ବରୁ ଏଭଳି ପ୍ରଶ୍ନ ଜନମଙ୍ଗଳ ହିତ ପାଇଁ କେହି ପଚାରି ଥିବାର ପ୍ରମାଣ ନାହିଁ, ଯେହେତୁ କେହି ମରିବାକୁ ଇଚ୍ଛା କରେ ନାହିଁ । ଯଦି କେହି ଆତ୍ମହତ୍ୟା କରେ, ତେବେ ତାକୁ ତା'ର ଅବସ୍ଥା ବାଧ କରେ ବୋଲି ବୁଝିଥାଉ । ଶୁକଦେବଙ୍କ ଉତ୍ତର କେବଳ ମୁକ୍ତିପଥ ପାଇଁ ଶ୍ରବଣ-କୀର୍ତ୍ତନ ସ୍ମରଣ ହିଁ କର୍ତ୍ତବ୍ୟ । ଗୃହସଂସାର ସମ୍ବନ୍ଧରେ ଚିନ୍ତାକରିବା ଅନୁଚିତ । ଯଥା ଫାଶୀ ପାଉଥିବା ଲୋକ ମୃତ୍ୟୁବେଳେ ଅନ୍ୟ କଥାସବୁ ଭାବେ । କାହିଁକି ? କାରଣ ସେ ମୃତ୍ୟୁକୁ ଭୟ କରେ ଓ ସଂସାର ବନ୍ଧନର ଆକର୍ଷଣ ଯଥା ପାର୍ଥିବ ଶକ୍ତି ତଳକୁ ଟାଣୁଥାଏ । ତାହା କ'ଣ ?

ରାତ୍ରିରେ ନିଦ୍ରା ଓ ସ୍ତ୍ରୀ ସମ୍ଭୋଗ । ଦିନରେ ଅର୍ଥ ଉପାର୍ଜନ-କୁଟୁମ୍ବ ପୋଷଣ ନିଜର ଶରୀର-ସନ୍ତାନ ସନ୍ତତିଙ୍କ ପ୍ରତି ଆସକ୍ତି । ଏଥିରେ ଲୁଚିଥାଏ କାମନା । ସେ ମନେକରେ ଏମାନେ ହେଉଛନ୍ତି ସହାୟକ ସୈନ୍ୟ ଏବଂ ମୃତ୍ୟୁ ସହିତ ଲଢାଇ କରି ଛଡାଇ ଆଣିବେ । ମନୁଷ୍ୟ ମରୁଥିବାର ଦେଖେ ନ ଦେଖିବା ଭଳି ଛଳନା କରେ । ସେଥିପାଇଁ ମନବୋଧ ଚଉତିଶା କହେ, "ଗଲେଣି ତୋ ସଙ୍ଗରୁ ଯେତେକ ଜନ ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନ । ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ । ଘଟ ଛୁଟିଲେ ତୋତେ ବୋଲିବେ ଭୂତ । ଥୋଇଲା ଧନ ତୋର ଖଣ୍ଡ ଖାଇବେ ।" ଯେତେ କଳା ଧନ ଲୁଚାଇ ରଖିଛୁ, ଯାହାଙ୍କ ପାଇଁ ସେ କେବେ ପଚାରିବେ ନାହିଁ । ତେବେ କ'ଣ କରିବା ଉଚିତ୍ ? ଭଗବାନଙ୍କ ନାମ ଶ୍ରବଣ ଦ୍ୱାରା-କୀର୍ତ୍ତନ ଦ୍ୱାରା ହିଁ ଓ ସ୍ମରଣ ଦ୍ୱାରାହିଁ ସମ୍ଭବ । ଗୋଟିଏ ପ୍ରଶ୍ନ ଆସେ ଭଗବାନ କିଏ କିପରି ଓ ତାଙ୍କର ରୂପ କିପରି, ଅଜଣା, ତେବେ ତାଙ୍କୁ କିପରି ବର୍ଣ୍ଣନା କରାଯାଇ ପାଇବ ? ଏଥିରୁ ବୁଝାପଡେ, ସେତେବେଳେ କୌଣସି ମୂର୍ତ୍ତିପୂଜା ନଥିଲା । କଳ୍ପନା ବଳରେ ତାଙ୍କର ରୂପ ଅଙ୍କନ କରି ପୂଜା କରାଯାଉଥିଲା । ଅତଏବ ବର୍ତ୍ତମାନ ଶୁକଦେବ ପରୀକ୍ଷିତଙ୍କୁ ଭଗବାନଙ୍କ ବିରାଟ ରୂପ

ବର୍ଣ୍ଣନା କରୁଛନ୍ତି ଓ ପରୀକ୍ଷିତ କଳ୍ପନା ବଳରେ ସେହି ରୂପକୁ ଦର୍ଶନ କରୁଛନ୍ତି। ଶୁକଦେବ ଏକ ଉଦାହରଣ ଦେଉଛନ୍ତି, ଖଟ୍ୱାଙ୍ଗ ବୋଲି ଜଣେ ରାଜା ଥିଲେ, ସେ ଜାଣିବାକୁ ପାଇଲେ ଯେ ତାଙ୍କର ମୃତ୍ୟୁ ସମୟ ଆଉ ମୁହୂର୍ତ୍ତେ ମାତ୍ର ଅଛି, ସେ ସଙ୍ଗେ ସଙ୍ଗେ ଏ ବିଷୟାସକ୍ତ ସଂସାର ପ୍ରତି ବିରାଗ ଭାବ ଆଣି ଭଗବାନଙ୍କୁ ସ୍ମରଣ ଓ ତାଙ୍କ ଶରଣରେ ରହିବା ମାତ୍ରେ, ସେ ମୁକ୍ତି ପାଇଗଲେ। କିନ୍ତୁ ଆପଣଙ୍କ ପାଇଁ ସାତ ଦିନ ଅଛି। ତେବେ ଅସମ୍ଭବ ନୁହେଁ। ଯେ ମୃତ୍ୟୁକୁ ଭୟ କରେ ତାଙ୍କ ପାଇଁ ଅସମ୍ଭବ। କିନ୍ତୁ ରାଜା ଆପଣ ମୃତ୍ୟୁ ହେୟଜ୍ଞାନ କରନ୍ତି ଓ ମୁକ୍ତି ଚାହିଁଛନ୍ତି, ସଂସାରକୁ ମନ ମଧ୍ୟରୁ ତ୍ୟାଗ କରନ୍ତୁ।

ଜଣେ ତୈଳିକ ଧନାଢ୍ୟ ଥିଲେ। ସେ ସମୟରେ ଧାନ ଯାହାର ଥାଏ ସେ ଧନୀ। ଅତଏବ ବୃଦ୍ଧର ବହୁତ ଅମାର ଧାନ ଥାଏ। ଲୋକେ ତିରୋଟି ସମୟରେ ଧାଡି ଲଗାନ୍ତି, ବୁଢା ପିତଳ ଗୌଣୀରେ ଧନ ମାପେ ଓ ତିନି ପାଆ ଦିଏ, ଚାରି ପାଆର ପଇସା ନିଏ। ଏତେ ଶିଘ୍ର ମାପେ ଯେ ଅଭାବୀ କିଛି କୁହନ୍ତି ନାହିଁ। ମୃତ୍ୟୁ ହେବ, ଗୃହରେ ହରିବଂଶ ଶୁଣିବାର ବ୍ୟବସ୍ଥା କଲା। ହରିବଂଶ ପାଠ ଶେଷ ହେଲା। ବୁଢା ଯିବ। ପୁଅମାନେ ବୁଢାର କାନ ପାଖରେ, "ବାପା ହରିନାମ କହ-ରାମ ନାମ କହ", ବୁଢା କେବଳ ଉଚାରଣ କଲା, "ତିନି ତିନି ପା-ତିନି ତିନି ପା" । ସଂସାର ବନ୍ଧନ ଓ ଅର୍ଥ ଲାଳସାର ଶକ୍ତି କେତେ ? ହେ ରାଜା, ଦୁର୍ନୀତିକୁ ଭୁଲି ଯାଅ। ଧୀରସ୍ଥିର ହୋଇ ବସି ଅ-ଉ-ମ ଓଁ ବୋଲି ବାରମ୍ବାର ଉଚ୍ଚାରଣ କର, ମନକୁ ଦମନ କର, ଇନ୍ଦ୍ରିୟମାନଙ୍କୁ ଭୁଲି ଯାଅ, ବୁଦ୍ଧିଦ୍ୱାରା। ଭଗବାନଙ୍କୁ ସ୍ମରଣ କର କିନ୍ତୁ ଓଁକାର କେବେ ବନ୍ଦ ହେବ ନାହିଁ, ପ୍ରାଣ ମାଧ୍ୟମରେ ଧାନ ଓ ପରେ ସମାଧିରେ ରହିବାକୁ ହେବ। ଏହାର ନାମ ଭକ୍ତି ଲକ୍ଷଣ ଯୋଗ। ଏହାର ସିଦ୍ଧିପରେ ଭଗବତ ଦର୍ଶନର ପଥ ସୁଗମ ହେବ। (ପୁରାଣଟିକୁ ପଢନ୍ତୁ)। ଗୁରୁ-ଶିଷ୍ୟ ପରମ୍ପରା କ୍ଷେତ୍ରରେ ଶିକ୍ଷାଦାନ ସନ୍ଦେହ ମୁକ୍ତ ହେବା ଉଚିତ। ତେଣୁ ଶିଷ୍ୟ ବା ଛାତ୍ର ଯେତେବେଳ ପର୍ଯ୍ୟନ୍ତ ସନ୍ଦେହ ମୁକ୍ତ ହୋଇ ନଥିଲେ ଛାତ୍ର ଶିଷ୍ୟ ଗୁରୁଙ୍କୁ ପ୍ରଶ୍ନ କରିବା ସବୁକାଳ ପାଇଁ ସମ୍ଭବ। ପଛରେ ଶିକ୍ଷକଙ୍କ ଘରେ କୋଚିଂ ସେଣ୍ଟରରେ ମାଳ ମାଳ ହୋଇ ବସି ହଜାର ହଜାର ଟଙ୍କା ଟ୍ୟୁସନ୍ ଫି ଦେବାକୁ ପଡିବ ନାହିଁ। ତେଣୁ ଶିକ୍ଷକଙ୍କର ଗଭୀର ଜ୍ଞାନ ଓ ଧୈର୍ଯ୍ୟ ଥିବା ଦରକାର। ଏଠାରେ ପରୀକ୍ଷିତଙ୍କ ପ୍ରଶ୍ନ ମନର ମଳିନତା ଦୂର କରିବାର ଉପାୟ କୁହନ୍ତୁ,କେଉଁଠାରେ କରାଯାଏ, ବୁଝାଇ କୁହନ୍ତୁ। ଶୁକଦେବଙ୍କ ଉତ୍ତର ବିଷୟାସଙ୍ଗ ତ୍ୟାଗ କରି ଆସନ ପ୍ରାଣାୟାମ-ଇନ୍ଦ୍ରିୟଜୟ ପୂର୍ବକ ବୁଦ୍ଧି ଦ୍ୱାରା ଭଗବାନଙ୍କ ସ୍ଥୁଳ ରୂପରୁ ସ୍ଥୁଳତର ଅବସ୍ଥାକୁ ଲକ୍ଷ୍ୟ କଲେ ଯେଉଁ ଅବସ୍ଥା ଆସେ ତାହା ହିଁ ଅତୀତ-ବର୍ତ୍ତମାନ ଭବିଷ୍ୟତ ଅବସ୍ଥା। ସ୍ଥୁଳ ଶରୀର ବୁଦ୍ଧିବଳେ-ମନକୁ

ସ୍ଥାପିବ ନିଶ୍ଚଳେ । ବିଶେଷ ଗୋବିନ୍ଦ ଶରୀର ସ୍ଥୁଳଙ୍କ ମଧ ସ୍ଥୁଳତର । ଯହିଁ ସଂସାର ପରିମାଣ ଭୂତ,ଭବିଷ୍ୟ,ବର୍ତ୍ତମାନ । ପୃଥିବୀର ଶରୀର ଓ ବିରାଟ ରୂପ କ'ଣ ? ପ୍ରଥମେ ଆମେ ଆମର ପିତା ମାତାଙ୍କୁ ଦେଖିଥିଲେ, ତାଙ୍କ ରୂପ କଳ୍ପନା ବଳରେ ଅନୁମାନ କରିପାରିବା ଏବଂ ଗଭୀର ଧ୍ୟାନ ଯୋଗେ ଆଙ୍କିପାରିବା । ଠିକ୍ ସେହିପରି ହରଷ, ମୁଦ୍ରିତ ଲୋଚନ-ଚିତ୍ତେ ଚିନ୍ତଇ ଭଗବାନ । ସେ ହରି ଚରଣ କମଳେ ସୁଜନ ଚିନ୍ତ ଧ୍ୟାନବଳେ ।"ଏଠାରେ ମନୁଷ୍ୟର ରୂପ ଅଙ୍କନ କରି ତା'ର ଆପାଦମସ୍ତକର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଅନ୍ତର ଓ ବାହାରର ସମସ୍ତ ଦୃଶ୍ୟ ଦେଖିବା ଆବଶ୍ୟକ । ନିଜର ଶରୀରକୁ ମଧ ଦର୍ଶନ କରିବା ଦରକାର । କିନ୍ତୁ, ଓଁକାରେ ଧ୍ୱନୀ ଚାଲୁ ରହି । ଶରୀର ସହ ପ୍ରକୃତିକୁ ଅନୁଧ୍ୟାନ କଲେ ଦେଖିହେବ ସେହି ବିରାଟ ରୂପ । ଏ ବିରାଟ ଦୁନିଆ । ଏ ବିରାଟ ଦୁନିଆ ମଧ୍ୟରେ ଗୋଟିଏ ରୂପ ବିରାଟ ପୁରୁଷ । ସେହି ଭଗବାନ ହେଉଛନ୍ତି ଜଗତର ନାଥ ଜଗନ୍ନାଥ । ସୃଷ୍ଟି-ସ୍ରଷ୍ଟା-ସୃଷ୍ଟିପାଳକ-ସୃଷ୍ଟି ଧ୍ୱଂସକ । ଶରୀର ମଧ ଭାଗ ନାଭିଚକ୍ର ଠାରୁ ନିମ୍ନ ଦେଶ ଓ ଉର୍ଦ୍ଧ୍ୱକୁ ଦୁଇଭାଗ କରି ଚିନ୍ତା କର ଓ ଅବଲୋକନ କର । ହେଉଛନ୍ତି ବିରାଟ ପୁରୁଷଙ୍କ ରୂପ । ପାତଳ-ରସାତଳ-ମହାତଳ-ତଳାତଳ ସୁତଳ-ବିତଳ-ଅତଳ । ତଳିପା ଠାରୁ କଟିଦେଶ । "ବ୍ରହ୍ମାଣ୍ଡ ଚତୁର୍ଦ୍ଦଶ ପୁର-ପ୍ରମାଣ ଶରୀର ଯାହାର ।"ବର୍ତ୍ତମାନ ନାଭିଚକ୍ର ଠାରୁ ଉର୍ଦ୍ଧ୍ୱ ଦେଶର ବର୍ଣ୍ଣନା । ନଭସ୍ଥଳ-ସ୍ୱର୍ଗ-ମହଲୋକ-ଜନଲୋକ-ତପୋଲୋକ-ସତ୍ୟଲୋକ । ତାପରେ ଇନ୍ଦ୍ରିୟଗଣ କର୍ଣ୍ଣଦଶଦିଗ, ନାକ-ଅଶ୍ୱିନ କୁମାର ଦ୍ୱୟ-ଗନ୍ଧ ଓ ଘ୍ରାଣଶକ୍ତି, ମୁଖ୍ୟ-ଅଗ୍ନି,ନେତ୍ର, ଭୃକୁଟି ବ୍ରହ୍ମଲୋକ, ତାକୁ ଜଳ, ଜିହ୍ୱା-ରସ । ବର୍ତ୍ତମାନ ଅନ୍ୟ ଗୁଡିକର ସ୍ଥିତି ଓ କାର୍ଯ୍ୟ ବର୍ଣ୍ଣନା କରୁଛନ୍ତି ଶୁକଦେବ । ଯାହାକି ପ୍ରତ୍ୟେକ ପାଠକ ଜାଣିଛନ୍ତି । ଯାହାର ଗତି ଜାଣ କାଳ-ଜୀବ ସଂହାର ଯାର ଖେଳ । ପ୍ରାଣୀ ସଂହାର କ୍ରୀଡା ତାର-ଶୁଣ ହେ କୁରୁ ବୀରବର । ସର୍ବ ଶରୀର ଭଗବାନ ତା ତହୁଁ କେବା ଅଛି ଅନ୍ୟ । ଏ ହେଉଛି ଭଗବାନଙ୍କ ବିରାଟ ରୂପ । ବିଶ୍ୱରୂପ । ଆଚ୍ଛା, ଯେଉଁ ମହାନଗୁରୁ ଶୁକଦେବ, ଭଗବାନଙ୍କ ବିଶ୍ୱରୂପ ବର୍ଣ୍ଣନା କଲେ ଓ ପରୀକ୍ଷିତ ମହାରାଜା ଶୁଣିବା ସହିତ କଳ୍ପନା ବଳରେ ବିଶ୍ୱରୂପ ଦର୍ଶନ କଲେ, ସେହି ମହାନଗୁରୁ ଶୁକଦେବଙ୍କ ରୂପ କିପରି ? "ମହୀ ଭ୍ରମଇ ଇଚ୍ଛା ସୁଖେ-କୃଷ୍ଣର ନାମ ଗାଇ ମୁଖେ । ଲକ୍ଷି ନପାରି ଯାର ଅଙ୍ଗ, କ୍ଷଣକ୍ଷଣକେ ନା ନା ରଙ୍ଗ । ନରତେ ନିଜ ଲୋଭେ ତୋଷ ସଭାବେଅବଧୂତ ବେଶ । ନିଗୁଢ ଜ୍ୟୋତି ଶୁଭ୍ରବର୍ଣ୍ଣ-କାମିନୀ ବାଳକ ବେଢିଣ । ଷୋଡଶ ବସ୍ୱର ସୁନ୍ଦର-ରୂପ କି ଦେବା ପଟାନ୍ତର," ଆଉ କ'ଣ ଉନ୍ନତ ନାସିକା, ସମାନ କର୍ଣ୍ଣ-ଉନ୍ନତ ବିପୁଳ ବପୁ-ଦିଗମ୍ବର ବେଶ-ଆଜାନୁ ଲମ୍ବିତ ବାହୁ-କୃଷ୍ଣଙ୍କ ତୁଲ୍ୟ ଶ୍ୟାମ ମନୋହରୀ ଅଙ୍ଗକାନ୍ତି ନାରୀମାନଙ୍କ ମନୋହର

ସ୍ମିତହାସ୍ୟ, ଏହି ସବୁ ତାଙ୍କୁ ଚିହ୍ନାଇ ଦେଉଥିଲା । ସେ ହେଉଛନ୍ତି ମହାନଗୁରୁ ଶୁକଦେବ । ତଥାପି ସେ ନିଜକୁ ଗୁପ୍ତ ରଖନ୍ତି କାରଣ ସେ ଥିଲେ ବିଷ୍ଣୁଗତ । ସାଧାରଣତଃ ଯେଉଁମାନେ ଜ୍ଞାନୀ, ସେମାନେ ସାଧାରଣଙ୍କୁ ନିଜର ପରିଚୟ ନ ଦେଇ ସାଧାରଣ ବ୍ୟବହାର ପ୍ରଦର୍ଶନ କରିଥାନ୍ତି । 'ନମନ୍ତ୍ରୀ ଗୁଣିନୋ ଜନାଃ' କିନ୍ତୁ ସଫରୀଫରଫରାୟତେ" କିମ୍ବା 'ଅଳ୍ପ ବିଦ୍ୟା ଭୟଙ୍କରୀ', ଅଥବା ବାବଦୁକ'ଙ୍କ ଭଳି ବ୍ୟବହାର ପ୍ରଦର୍ଶନ କରନ୍ତି ନାହିଁ ।

ଗୁରୁଦେବ ରାଜା ପରିକ୍ଷିତଙ୍କୁ କଳ୍ପନା ବଳରେ ଭଗବାନଙ୍କ ବିରାଟ ରୂପ ପ୍ରଦର୍ଶନ ସହ ବିଶ୍ୱରୂପ ଦର୍ଶନ କରାଇଛନ୍ତି । ତେଣୁ ଏ ଅକୂଳ ସଂସାରରେ ବନ୍ଧନରେ ପଡିବା ଠିକ୍ ନୁହେଁ ବିଷୟବାସନା ତ୍ୟାଗକରେ । ସଂସାର କର୍ତ୍ତା ସେ ବୋଲାନ୍ତି ସେ ବ୍ରହ୍ମା ବ୍ରହ୍ମଲୋକ ସ୍ଥିତି । ଯେ ପୁରେ ନାହିଁ ଦୁଃଖ ସୁଃଖ ଜରା ମରଣ ଉଦ୍‌ବେଗ । ଚିତ୍ତ ଅନର୍ଥ ହେତୁ ନାହିଁ ଜନ୍ମ ମରଣ ଭୟ କାହିଁ ? । କିନ୍ତୁ ବୁଦ୍ଧଦେବଙ୍କ ମତରେ, "ନିତ୍ୟ ନୈମିତ୍ତ ଜୀବନରେ ସଚେତନା ଅବସ୍ଥାରେ ଧ୍ୟାନ ଅଭ୍ୟାସ କଲେ ତାହା ଦୁଃଖର ବିନାଶ ଅଭିମୁଖେ ପଥ ପ୍ରଦର୍ଶନ କରିବ ଏବଂ ଅପାର ଆନନ୍ଦ ଓ ଶାନ୍ତିର ଉପଲବ୍ଧି କରିହେବ । ମୁକ୍ତି ନିମନ୍ତେ ପ୍ରାର୍ଥନା ଓ ଉପାସନା ଏକ ସୁନିଶ୍ଚିତ ମାଧମ ନୁହେଁ । ଏ ସଂସାରରେ ଚାରିପ୍ରକାରର ଦୁଃଖ-ଦୁଃଖର ଅବସ୍ଥାନ- ଦୁଃଖର କାରଣ -ଦୁଃଖର ବିନାଶ-ଦୁଃଖର ବିନାଶ ପାଇଁ ପଥ । ଜରା-ମୃତ୍ୟୁ-ଜନ୍ମ-ମୃତ୍ୟୁରେ ଦୁଃଖ ରହିଛି । ମନୁଷ୍ୟକୃତ ଦୁଃଖ-ଅଜ୍ଞାନ ତୃଟିପୂର୍ଣ୍ଣ ଜୀବନ- କ୍ରୋଧ, ଘୃଣା, ସନ୍ଦେହ ଈର୍ଷା ବ୍ୟର୍ଥତାରେ ବି ଦୁଃଖ ରହିଛି । ତେଣୁ ନିଜେ ନିଜର ଉଦ୍ଧାର ପାଇଁ କର୍ତ୍ତା । ମନର ଗଭୀରତମ ପ୍ରଦେଶକୁ ଅବଲୋକନ କର ମୁକ୍ତି ମିଳିବ କାରଣ ଦୁଃଖର ମୂଳତତ୍ତ୍ୱକୁ ବୁଝିପାରିଛ । ଦୁରାତ୍ମା ଭାବ ପରିହରି ଦୁହୃଦ ଭାବ ଚିତ୍ତଧରି । ପରମ ପଦେ କରିସ୍ଥାନ-ତେବେ ସାଧିବ ଦୃଢମନ । ବିଶ୍ୱକୁ ବ୍ରହ୍ମମୟ ଭାବିପାରିଲେ ହେବ ସର୍ବ ସିଦ୍ଧି । ଭଗବତ ଭଜନ ମାଳା, ମୁନ ମୂତ୍ରେ ଗୁନ୍ଥ ନ କରି ହେଲା-ପ୍ରଥମ ଦ୍ୱିତୀୟ ଆଗମ ଏ ବାଣୀ ତୃତୀୟେ ବ୍ରହ୍ମାଣ୍ଡ ସର୍ଜନା ହେଲା । କହେ ଯଶୋବନ୍ତ ସେ ପାଦେ ଶରଣେ, ଆକାରଣେ ମୋର ଜନମ ଗଲା, ଭାଗବତ ଭଜନ ମାଳା" । ମହାରାଜା ପରୀକ୍ଷିତଙ୍କ ପ୍ରଥମ ପ୍ରଶ୍ନ ଥିଲା, କହ ଜୀବନ ଯିବା କାଳେ କିବା ସାଧିବି ମହୀତଳେ, ଏହାର ଉତ୍ତର ମହାମୁନୀ ଶୁକଦେବ ଦେଲେ । ବାକି ରହିଲାକି ବା ଶୁଣିବି କର୍ଣ୍ଣପଥେ ସ୍ମରଣ କି କରିବି ଚିତ୍ତେ । କିବା ବଚନ ଉଚାରଣ-ଭିଜିବି କାହାର ଚରଣ ଏହି ପ୍ରଶ୍ନଗୁଡିକର ଉତ୍ତର ପରେ ପ୍ରଦାନ ଯୋଗ୍ୟ । ହରି ବୋଲି ।

"ହରେକୃଷ୍ଣ ହରେକୃଷ୍ଣ, କୃଷ୍ଣକୃଷ୍ଣ ହରେହରେ, ହରେରାମ ହରେରାମ, ରାମରାମ ହରେହରେ ।"

# ହରିକଥା - ୪

ଶୁଣ ରାଜନ ପୂର୍ଣ୍ଣ ଦୋହା ତୁ ମୋତେ ପଚାରିଲୁ ଯାହା । ମନୁଷ୍ୟ ମଧ୍ୟ ସାଧୁବାଣୀ- ମରଣ କାଳେ ତାହା ଜାଣି । ମନୁଷ୍ୟ ମାନଙ୍କ ମଧ୍ୟରେ ବୁଦ୍ଧିମାନ ବ୍ୟକ୍ତିମାନେ ମୃତ୍ୟୁ ସମୟରେ କ'ଣ କ'ଣ କରିବା ଉଚିତ ବୋଲି ପ୍ରଶ୍ନ କରିଥାଆନ୍ତି । ଏହି ପ୍ରଶ୍ନ ଉପରେ ଶୁକଦେବ ଉତ୍ତର ଦେଇଛନ୍ତି । ଏହି ପ୍ରସ୍ତାବରେ ଉତ୍ତର କ'ଣ ? ଯେ ବହୁ ତେଜ ପାଇଁ ଇଚ୍ଛୁକ, ସେ ବ୍ରହ୍ମାଙ୍କୁ ଆରାଧନା କରିବ, ଯେ ଇନ୍ଦ୍ରିୟ ଶକ୍ତି କାମନା କରିବ, ସେ ଦୁର୍ଗାଙ୍କୁ ତେଜ ପାଇଁ ଅଗ୍ନିଙ୍କୁ ଧନ ପାଇଁ ବସୁଧାଙ୍କୁ ଶୌର୍ଯ୍ୟବୀର୍ଯ୍ୟ ପାଇଁ ରୁଦ୍ରମାନଙ୍କୁ ଭୋଜ୍ୟ ପାଇଁ ଆଦିତ୍ୟ ସ୍ୱର୍ଗସୁଖ ପାଇଁ ଆଦିତ୍ୟ-ରାଜ୍ୟପ୍ରାପ୍ତି ପାଇଁ ବିଶ୍ୱଦେବାମାନଙ୍କୁ ପ୍ରଜାଙ୍କୁ ବଶ୍ୟ ପାଇଁ ସାଧାରଣଙ୍କୁ ସୁନ୍ଦର ରୂପ ପାଇଁ ଗନ୍ଧର୍ବମାନଙ୍କୁ-ଉତ୍ତମ ସ୍ତ୍ରୀ ପାଇଁ ଉର୍ବଶୀ, ଆଧିପତ୍ୟ ବିସ୍ତାର ପାଇଁ ପରମେଷ୍ଠୀଙ୍କୁ, ଯଶ ପାଇଁ ବିଷ୍ଣୁଙ୍କୁ, ଧନ ବରୁଣ-ବିଦ୍ୟା ପାଇଁ ଶିବ ଦାମ୍ପତ୍ୟସୁଖ ପାଇଁ ପାର୍ବତୀ-ସନ୍ତାନ ପ୍ରାପ୍ତି ପାଇଁ ପିତାଗଣ-ବାଧାରୁ ରକ୍ଷା ପାଇଁ ଯକ୍ଷ, ବଳବାନ ପାଇଁ ମରୁତ, ଶତ୍ରୁମାରଣ ପାଇଁ ନିର୍ଭତି ରାକ୍ଷସ, ଭୋଗ କାମନା ପାଇଁ ଚନ୍ଦ୍ର ନିଷ୍କାମ ପାଇଁ ପରମ ପୁରୁଷ-ମୋକ୍ଷ ପାଇଁ ପରମାତ୍ମା-ଯେ ଅଚଳାଚଳ ଭକ୍ତି ରଖନ୍ତି ସେହିମାନେ ହିଁ ପରମ ପୁରୁଷାର୍ଥ ଯେଉଁ କଥାମାନଙ୍କ ରାଗ ଦ୍ୱେଷ-କ୍ରୋଧ-ଈର୍ଷା-ହିଂସା ଗୁଣଗୁଡିକରୁ ନିବୃତ୍ତ କରୁଥିବା ଜ୍ଞାନ ହିଁ ଆତ୍ମା ବା ଆନନ୍ଦ ମିଳେ ସଂସାର ପ୍ରତି ବୈରାଗ୍ୟ ହୁଏ । ଶେଷରେ ମୋକ୍ଷ ପନ୍ଥା ହିଁ ଭକ୍ତିଯୋଗ, ଏ ସମସ୍ତ ଘଟଣାବଳୀରେ ଥାଏ, 'ହରିକଥା' । ହରି ଭକତ ଜନ ସଙ୍ଗେ ତରଇ ଏ ଭବ ତରଙ୍ଗେ । ଜ୍ଞାନ ପ୍ରସାର ଭକ୍ତି ବଳେ-ତ୍ରିଗୁଣ ହରଇ ନିଷ୍କଳେ । କୈବଲ୍ୟ ଲଭିବାର ପଥ ଏ ଭକ୍ତି ଯୋଗୀଙ୍କର ମତ ।' (ଜଣେ ଯଦି କହିବ, ସେ ସମସ୍ତ ଚାହେଁ, କିଏ ଦେଇ ପାରିବେ ?) ଦିନବନ୍ଧୁ , ଏହିଅଳି ଶ୍ରୀଛାମୁରେ ଶ୍ରୀରଙ୍ଗା ଚରଣ ସେବାରେ ମୋ ମନ, ରହିଥାଉ ନିରନ୍ତରେ, ଦିନବନ୍ଧୁ... । ଦାନା, କନା ପଛେ ମନା ହେଉ ମୋତେ, ନୀଳଚକ୍ର ବାନା ଚାହିଁ, ସୁଖୀ ହେଉଥିବି ଅଖିଳ ପତି ହେ, ନିର୍ଦ୍ଦୟ ହୋଇବ ନାହିଁ, ଦୀନ ବନ୍ଧୁ..... । ବାର ମାସରେ ତେର ଯାତ୍ରା ଦେଖୁଥିବି, ଶୀ କ୍ଷେତ୍ରେ ହୋଇ ଭିକାରୀ, ସାଧୁ ସନ୍ଥଙ୍କ ବେଲା କିଙ୍କର, ମାଗୁଥିବି ସାଧୁକାରୀ । ଆନନ୍ଦ ବଜାରେ ବୁଲି ମୁଁ ମଜାରେ, ଗାଉଥିବି ତୋର ନାମ, ତୋ ପ୍ରେମ ସାଗରେ ବୁଡି ଯାଉଥିବି ବୋଲି ହରେକୃଷ୍ଣ ନାମ । ଦୀନବନ୍ଧୁ.... । ଏଥି ପାଇଁ କୁଳ ମୂଳ ହରାଇଛି, ସାଥୀକରି ତୋତେ ଏକା, ଦାସ ବନମାଳୀ ଦୋଷ ନଧରିବୁ ଗୋବର୍ଦ୍ଧନ ଗିରିଟେକା । ଦୀନବନ୍ଧୁ, ଏହି ଅଳି ଶ୍ରୀଛାମୁରେ । ସନ୍ଥମାନଙ୍କ ସଭାରେ ଯେଉଁ କଥାମାନ ହୁଏ ତାହା ହରିକଥା ବା ହରିକଥାରେ ପରିଣତ ହୁଏ । ଏତେବେଡ ଶରୀର ବହନ କରି ଯଦି ତାର ସବାଙ୍ଗ

ହରିକଥାରେ ନ ଲାଗେ, ତାର ପରିଣତି କ'ଣ ହେବ ? ଏଠାରେ ତାହା ହିଁ ଆଲୋଚ୍ୟ । ଯଦି ମନୁଷ୍ୟ ଜନ୍ମ ପାଇଁ ତାକୁ ଆମେ ନ ଜାଣିବା ପଶୁ ହେବା ହିଁ ଭଲ । ସେଥିପାଇଁ ଭଗବତ୍‌ଦର୍ଶନ କହେ, "ଶ୍ୱାନ ଶୂକର ଓଟ ଖର, ଏହାଙ୍କ ସମାନ ଯେ ନର । କୃଷ୍ଣର ନାମ ଉଚାରଣ ନଶୁଣେ ଯାହାର ଶ୍ରବଣ । ତାହାର କର୍ଣ୍ଣଯୁଗ କାନ୍ଥେ ବିବରେ ଦିଶନ୍ତି ଯେମନ୍ତେ । ତୁଣ୍ଡରେ ମଧ ଜିହ୍ୱା ବହି ସେ ହରି ନାମ ନ ଭାଷଇ । ଦୁର୍ବାର ବାଣୀ ବୋଲି ତାରେ ସେ ହରିନାମ ନ ଉଚ୍ଚାରେ । ଯାର ଉତ୍ତମ ଶିର ସାଜେ । ସୁବର୍ଣ୍ଣ ମୁକୁଟ ବିରାଜେ । ପାଟ ବସନ ସୁବର୍ଣ୍ଣ ଶ୍ରବଣ ବିରାଜେ କୁଣ୍ଡଳ । ସେ ଯେବେ ହରିଙ୍କୁ ନ ନମେ ସେ ମୁଣ୍ଡ ଭାର ବହେ ଶ୍ୟାମେ ।" ଇତ୍ୟାଦି ଏ ଶରୀରର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଯଦି ଭଗବାନଙ୍କ କାର୍ଯ୍ୟ ନିର୍ଦ୍ଦେଶରେ ଲାଗୁ ନାହିଁ । ତେବେ ତାହା ପଶୁ ଶରୀର ସହିତ ସମାନ ଅର୍ଥାତ୍ ପଶୁନର । ପରୀକ୍ଷିତ ଯାହା ବୁଝିବାକୁ ଚାହାନ୍ତି ଶୁକଦେବ ତାହାର ଉତ୍ତର ଦେଲେ । ଅର୍ଥାତ୍ ମୃତ୍ୟୁ ଆଗରୁ ମନୁଷ୍ୟ କ'ଣ କ'ଣ କରିବା ଉଚିତ୍ ।' ଭୁଲ । ମନ ଭୁଲ୍ କାହିଁକି ଅଇରି ତୋ କଳପନା, ଛେଦିପକା ବେନି ଡେଣା," ଛଅାଣ ମନେ ନାହିଁକି, ଭୁଲାମନ..... । ସବୁ ସମୟରେ ମନେ ରଖିବାକୁ ହେବ, ପରୀକ୍ଷିତଙ୍କ ପ୍ରଶ୍ନଗୁଡିକ ଯଥା- "କହ ଜୀବନ ଯିବା କାଳେ କିବା ସାଧିବି ମହୀତଳେ । କିବା ଶୁଣିବି କର୍ଣ୍ଣପଥେ-ସ୍ମରଣ କି କରିବି ଚିତ୍ତେ । କିବା ମୁଁ ମନେ ଉଚାରଣ ଭଜିବି କାହାର ଚରଣ ।" "ନମେସ୍ତ ପ୍ରଭୁ ଜଗନ୍ନାଥ ଅନାଥ ଲୋକର ହେ ନାଥ । ନମସ୍ତେ ପ୍ରଭୁ ବାସୁଦେବ-ଭକତ ଜନଙ୍କ ବାନ୍ଧବ । ନମସ୍ତେ ପ୍ରଭୁ ହୃଷିକେଶ-ଭକତ ଜନଙ୍କ ବିଶ୍ୱାସ । ନମସ୍ତେ ପ୍ରଭୁ ବିଶ୍ୱାରୂପୀ-ସକଳ ହୃଦେ ଅଛୁ ବ୍ୟାପୀ । ତୁ ସୃଷ୍ଟି ସ୍ଥିତି ଲୟ କରୁ-ଆବର ଗର୍ଭରେ ସଂହାରୁ । ତୁ ଅଟୁ ଦରିଦ୍ରଙ୍କ ଧନ-ତୋ ପାଦେ ରହୁ ମୋର ମନ । ସତୀ ଯୁବତୀଙ୍କର ମନେ ନିଜର ସାମୀ ଥାନ୍ତି ଯେହ୍ନେ । ସେହି ପ୍ରକାରେ ମୋର ମନ-ତୋ ପାଦେ ରହୁ ମୋର ମନ । ସେହି ପ୍ରକାରେ ମୋର ମନ-ତୋ ପାଦେ ରହୁ ଭଗବାନ ।" ଏଠାରେ ଏକ ସୁନ୍ଦର ତୁଳନା କରିଛନ୍ତି ଦରିଦ୍ର ଧନ ପାଇଁ ରଙ୍ଗ, ସତୀ ନାରୀ ଯେ ତାର ସାମୀ ଠାରେ ମନ, ତୋ ଠାରେ ମୋର ମନ ଥାଉ । ପ୍ରଭୁ ଅସତୀ ହେବାକୁ ଇଚ୍ଛା ନାହିଁକି ଦରିଦ୍ର ମୁଁ ନୁହେଁ । ସାଧାରଣ ଲୋକଙ୍କ କୃଷ୍ଣଙ୍କୁ ପାଇବା କଷ୍ଟକର କାହିଁକି ? ଏଠାରେ ବୃଷଭ କଥା କୁହାଯାଇଛି, ବୃଷଭ ଅର୍ଥ ଧର୍ମ, ତାର ଚାରିଟି ଗୋଡ । ସେ ଗୋଡ ଗୁଡିକ ହେଲା । ତପ-ଶରତ-ଦୟା-ସତ୍ୟ । ଯୁଗ ପରେ ଯୁଗ ସମୟ ଚକ୍ରରେ ଆସେ । କିଛି କାଳ ରହେ । ପୁଣି ଚାଲିଯାଏ । ସତ୍ୟ-ତ୍ରେତୟା-ଦ୍ୱାପର-କଳି । ଏହା ପ୍ରାକୃତିକ । ପ୍ରଥମ ଯୁଗ-ସତ୍ୟରେ ଚାରୋଟି ଥିଲା । ତୋହର ଚତୁର ଚରଣ ଯୁଗ ଆଚରଣ" ତପ ଶଉଚ ଦୟା ସତ ଯେ ଯୁଗ ଅନୁରୂପେ କୃତ । ସତ୍ୟ

ଯୁଗ ଅର୍ଥାତ୍ ଦେବତା ମାନଙ୍କ ପାଇଁ ୪ ହଜାର ୮ ଶହ ବର୍ଷ ବା ମନୁଷ୍ୟମାନଙ୍କ ପାଇଁ ୧୭,୨୮,୦୦୦ ବର୍ଷ ଶେଷ ହେବା କ୍ଷଣି, "ତପ ରହିଗଲା । ତ୍ରେତୟା ସଙ୍ଗେ ଶଉଚ ଗଲା ୩ ହଜାର ୬୦୦ ବର୍ଷ ଦେବତା ୧୨,୯୬,୦୦୦ ବର୍ଷ ମନୁଷ୍ୟ ପାଇଁ କଟିଗଲା । ଶଉଚ ରହିଲା । ଦ୍ୱାପର ଗଲା । ଦୟାସଙ୍ଗେ ୨ ହଜାରେ ୪ ଶହ ବା ୬୪୦୦ ବର୍ଷ । ତପ-ଶଉଚ-ଦୟା ପରେ କଳି-ମିଥ୍ୟା ରହିଲା କଳିଯୁଗ । ୧ ହଜାର ଦୁଇ ଶହ ମନୁଷ୍ୟଙ୍କର ୪,୩୨୦୦ ସହସ୍ର । ମନ ରହିଲା ଦୟାବଳେ-ଚରଣ ରହିଲା ନିଷ୍କଳେ । କଠୋର ତପ ଯେ ସାଧିବ ସେ ପ୍ରାଣୀ କୃଷ୍ଣଙ୍କୁ ପାଇବ । କଥାରେ ଅଛି କଷ୍ଟକଲେ କୃଷ୍ଣ ମିଳେ । କଠୋର ପରିଶ୍ରମ ନ କଲେ ଆଶାନୁରୂପ ଫଳ ମିଳେ ନାହିଁ । ତେଣୁ "ବାଳକେ ମୋର ବୋଲ କର ବେଳହୁଁ ଗୋବିନ୍ଦ ସୁମର ।" ପ୍ରହଲ୍ଲାଦ ତାର ସାଥୀ ଚାଟମାନଙ୍କୁ କହିଥିଲା କିନ୍ତୁ କଳିଯୁଗରେ କଳାଧନ ହିଁ କୃଷ୍ଣ । ଅତି ସହଜରେ ଶ୍ରମ ବିନା ମିଳିଯାଏ । ସେଥିପାଇଁ ସହରରେ ବଡ ବା ଧନୀଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଗରୀବଙ୍କ ସଂଖ୍ୟା ଅର୍ଥାତ୍ ଯେଉଁମାନେ କଠିନ ଶ୍ରମଦାନ କରନ୍ତି ତାଙ୍କର ସଂଖ୍ୟା କମ୍ । ତେବେ କୃଷ୍ଣଛଡା ଲୋକଙ୍କ ପାଖରେ କଳି ରହିବାରୁ ସେମାନେ ସମାଜରେ ବଡ ଓ ଉଚ୍ଚ ସ୍ଥାନ ପାଇଲେ," ଚାରି ପ୍ରକାର ସ୍ଥାନ କଲା-ନିତ୍ୟେ ଅଧର୍ମ ଯହିଁମେଳା । ଦ୍ୟୁତ-କାମିନୀ -ମଦ୍ୟପାନେ ପ୍ରାଣୀ ମରଣେ ଯେବା ସ୍ଥାନେ । ଟଙ୍କା କେଉଁଠି ଉଡୁଛି କ୍ରିକେଟ ଖେଳ ଲଟାରୀ ହାରଜିତ୍ ଖେଳରେ । ଦ୍ୱିତୀୟ ନାରୀ-କାମୀନୀ-ବାରାଙ୍ଗନା ବଡବଡିଆଙ୍କ ଆବଶ୍ୟକ ପରବାଏ ନାହିଁ । ମଦ୍ୟ ସର୍ବଦା, ସଦ୍ୟ, ଚିକ୍ ମିକ୍ ବିଡାବିଡା ଖର୍ଚ୍ଚ । ମାଂସ ସମସ୍ତଙ୍କୁ ନାହିଁ ଅଜଣା । କଳିର ଶେଷ ନିବେଦନ ସ୍ୱର୍ଣ୍ଣ-ସୁବର୍ଣ୍ଣ-ସୁନା-ସୁନାମୁଣ୍ଡା । ତେବେ ହିରଭଜନ କରୁଥିବା ଲୋକ କୃଷ୍ଣଙ୍କୁ ଖୋଜିବେ ବା ଅନ୍ୟ ପାର୍ଶ୍ୱରେ କାମିନୀ ଓ ମଦକୁ ଚାହିଁବେ । ସେଥିପାଇଁ ଶ୍ରୀମଦ୍ ଭାଗବତକୁ କେହି ମୁଖରେ ନଧରି କ୍ୟାସେଟ୍‌ରେ ଶୁଣୁଛନ୍ତି, ବିଜ୍ଞାନର ଅବଦାନ । ହରିବୋଲ "ନୀଳ ଚକ୍ରେ ହେ, ଦେଖ ଉଡୁଛି ବାନା, ପତିତପାବନ ନାମଟି ଯା'ରନା । ଆସ ଆସ ବୋଲି ପାତକୀମାନଙ୍କୁ ଡାକୁଅଛି ପରା ସଂଗାତ ! ଅନା ନେତ ଧ୍ୱଜାବର ଉଡେ ଫରଫର ଉଡାଇ ଦେଉଛି ଭବ ଯାତନା । ନୀଳ ଚକ୍ରେ ହେ, ଦେଖ ଉଡୁଛି ବାନା-ପତିତପାବନ ନାମଟି ଯା'ନାଁ ।

ବର୍ତ୍ତମାନ ତପସ୍ୟା ନାହିଁ କିମ୍ବା ଶଉଚ ନାହିଁ ଅବା ଦୟା ନାହିଁ ଅବା କ୍ଷମା ନାହିଁ ବା ସତ୍ୟ ନାହିଁ ତେବେ ଅଛି କ'ଣ ? ମିଥ୍ୟା ପ୍ରବଞ୍ଚନା-ଛଳନା-ପ୍ରତାରଣା-ଠକାମୀ ନିଷ୍ଠୁରତା-ଗର୍ବ-ଦମ୍ଭ ଅହଂକାର-କ୍ରୋଧ-ଲୋଭ-ମୋହ-ଶଠତା-

ଆତ୍ମବଡିମା-ପ୍ରତିଯୋଗିତା କଳଙ୍କିତ ପ୍ରେମ-ସ୍ନେହ ନାହିଁ-ମମତା ନାହିଁ-ଆଦର ନାହିଁ, ନାହିଁ ପୂଜ୍ୟ ପୂଜା। ଏହାର ନାମ କଳିଯୁଗ। ପତିତ-ଅବହେଳିତ-ଲାଞ୍ଛିତ-ଦରିଦ୍ର ଡାକୁଛନ୍ତି ହେ ଭଗବାନ ହେ ଜଗନ୍ନାଥ-ଜଗନ୍ନାଥ ରକ୍ଷମାମ୍ ଓ ଜଗନ୍ନାଥ-ଜଗନ୍ନାଥ-ଜଗନ୍ନାଥ ତ୍ରହିମାମ୍। "ପତିତଜନଙ୍କୁ ଉଦ୍ଧାରିବା ପାଇଁ ଉଡାଉ ଅଛି ପତକା। ବାହୁ ଟେକି ତୁମ୍ଭେ କି କରିବ କରୁଣା ଭଣ୍ଡାର ଫେଇ । ଦୁଃଖୀଗଲେ ନାଶ ଅର୍ଜିବ କି ଯଶ ପଛେ ଚଉବର୍ଗ (ଧନ-ଧାନ୍ୟ ଗୋପ-ଲକ୍ଷ୍ମୀ) ଦେଇ,ମହାପ୍ରଭୁ ଦାସ । ଶ୍ରୀମଦ୍ ଭାଗବତରେ ଦେଖିବାକୁ ମିଳେ ଅନେକ ପ୍ରଶ୍ନ ଓ ତାର ଉତ୍ତରମାଳା। ଏଠାରେ ଏକ ପକ୍ଷରେ ପରୀକ୍ଷିତ ହେଉଛନ୍ତି ପ୍ରଶ୍ନକର୍ତ୍ତା ଏବଂ ଶୁକ ମୁନୀ ହେଉଛନ୍ତି ଉତ୍ତରଦାତା କିନ୍ତୁ ଏହି ଦୁଇଜଣଙ୍କ ପୂର୍ବରୁ ଜଣେ ପ୍ରଶ୍ନ କର୍ତ୍ତା ଓ ଜଣେ ଉତ୍ତରଦାତା ଥିଲେ। ତାଙ୍କର କଥୋପକଥନ ହିଁ ସଂଗୃହୀତ ଏବଂ ପ୍ରକାଶିତ। ଏଠାରେ ମୂଳ ପ୍ରଶ୍ନକର୍ତ୍ତା ହେଉଛନ୍ତି ନାରଦ ଏବଂ ଉତ୍ତରଦାତା ହେଉଛନ୍ତି ବ୍ରହ୍ମା। ତାହାକୁ ଉଦ୍ଧାର କରିଛନ୍ତି। ଶ୍ରୋତା ବକତା ବିନା ଭାଗବତର ଚର୍ଚ୍ଚା ହୋଇ ନପାରେ। ପ୍ରଶ୍ନ-ଏହି ସଂସାରର ପ୍ରକାଶକ କିଏ ? ଆଧାର କ'ଣ ? କାହାଠାରେ ଏହା ଲୀନ ହୁଏ ? କାହାର ଅଧୀନରେ ଏହା ରହେ(୬)ଏହାର ସ୍ୱରୂପ କ'ଣ ? ବ୍ରହ୍ମା ନାରଦଙ୍କ ଉତ୍ତର ଦେଇଛନ୍ତି। "ଧନ୍ୟ ନାରଦ ମୁନିବର ସାଧୁର ପ୍ରସ୍ତାର ତୋହର। ତୁମ୍ଭ ପ୍ରଚାର ଜନହିତେ-ଏ ବ୍ରହ୍ମ ଭାଗବତ ଗ୍ରନ୍ଥେ। ବିଷ୍ଣୁର ଆଜ୍ଞା ଘେନି ଚିତେ ବ୍ରହ୍ମା ଗୁରୁବିଷ୍ଣୁ ଗୁରୁଦେବ ମହେଶ୍ୱର" ଅର୍ଥାତ୍ ଗୁରୁ ଶିଷ୍ୟ ପରମ୍ପରାର ରୂପରେଖ। କିନ୍ତୁ ବ୍ରହ୍ମା କହନ୍ତି ନାରଦଙ୍କୁ ଗୁରୁ ଶିଷ୍ୟ ପରମ୍ପରାର ରୂପରେଖ। କିନ୍ତୁ ବ୍ରହ୍ମା କହନ୍ତି ନାରଦଙ୍କୁ ତାହା ନୁହେଁ, ସେ ହେଉଛନ୍ତି, " ବିଷ୍ଣୁର ଆଜ୍ଞା ଯେମନ୍ତେ।" ଅତଏବ, ଏମାନଙ୍କ ଅନ୍ତରାଳରେ ଅନ୍ୟ ଏକ ଶକ୍ତି ଅଛି। ସେହି ହିଁ ସମସ୍ତ। ତାହାଙ୍କ ଆଜ୍ଞାରେ ବ୍ରହ୍ମାସୃଷ୍ଟି ସର୍ଜନା କଲେ। ତେବେ ବ୍ରହ୍ମା ହେଉଛନ୍ତି ପ୍ରକାଶକ। ଏହା ସମ୍ପୂର୍ଣ୍ଣ ମାୟା। ମହାମାୟା ଦ୍ୱାରା ସୃଷ୍ଟି-ସ୍ଥିତି-ଲୟ ସତ୍ତ୍ୱ-ରଜ-ତମ ଏହି ତିନିଗୁଣକୁ ଗ୍ରହଣ କରିଛନ୍ତି। ସେ ହେଉଛନ୍ତି ମାୟାପତି। ସେ ବ୍ରହ୍ମାଙ୍କ ସହିତ ସମସ୍ତଙ୍କୁ ନିୟନ୍ତ୍ରଣ କରନ୍ତି। ତେଣୁ କାଳ-କର୍ମ-ସ୍ୱଭାବକୁ ବାନ୍ଧି ରଖିଛନ୍ତି।" ତେଣୁ ସେ ମାୟାବଳେ ଏ ଜଗତ ଅଜ୍ଞାନମସେ ବିମୋହିତ। ମୁହିଁ ସୋଦର ଏ ଶରୀର-ଦ୍ୱାରା ସମ୍ପଦ ବନ୍ଧୁମୋର। ଅଜ୍ଞାନଜନଙ୍କ ଏଭାବ ସର୍ବସମ୍ପଦ ପଦ୍ମଲାଭ। ମାୟା ଈଶ୍ୱର ମାୟାବଳେ ସୃଜେ ସ୍ୱଭାବ କର୍ମଫଳେ। କଳ୍ପନା ବଳରେ ଏହି ଯେଉଁ ବିରାଟ ରୂପ ସୃଷ୍ଟି ହେଲେ, "ମୁହୁଁ କଳ୍ପିତ ବ୍ରହ୍ମକୁଳୁଁ କ୍ଷତ୍ରିୟ ଜାତ ବାହୁମୂଳୁଁ । ଉରଯୁଗରୁ ବୈଶ୍ୟଗଣ-ଶୁଦ୍ର ଉପୁଜିଲେ ଚରଣୁଁ। ଆଉ

ସେହି କଳ୍ପନା ବଳରେ ତାଙ୍କ ପାଦ ଦ୍ୱୟରେ ଭୂର୍ଲୋକ-ନାଭିରେ ଭୂବର୍ଲୋକ-ହୃଦୟରେ ସ୍ୱର୍ଗ ଲୋକ-ଉରୁ ସ୍ଥଳରେ ମହାଲୋକ-ଗ୍ରୀବାରେ ଜନଲୋକ-ସ୍ତନଦ୍ୱୟରେ ତପୋଲୋକ ମସ୍ତକରେ ସତ୍ୟଲୋକ । ବୈକୁଣ୍ଠରେ ହେଉଛି ସନାତନ ବ୍ରହ୍ମଲୋକ । କଟିଦେଶ ଅତଳ-ଉରୁରେ ବିତଳ-ଜାନୁ ସୁତଳ-ଜଙ୍ଘ-ତଳାତଳ ଗଣ୍ଠି-ମହାତଳ ପଞ୍ଝା ରସାତଳ-ପାଦତଳ ପାତାଳ । ହରିବୋଲ । "ମେଘ ନବଘନ ଥାଉଁ ଯେବେ ଦୀନ, ଚାତକ ଜୀବନ ହରାଇବ, ସମୁଦ୍ରେ ବରଷି ଘୋର ଜଳରାଶି, ଚାଳତ ବନ୍ଧୁ କି ବୋଲାଇବ । ୧। ମାଳତୀ ବକୁଳ-ବିକଚ-କମଳ, ବନସ୍ଥ ଆଜି ଯିବେ ବୋଲି ମରି, ପୂର୍ଣ୍ଣ ସୁଧାକର ଅନାଇ ଚକୋର,ମାଲିକା ଯେବେ ମରିବେ ଝୁରି ।୨। କଳ୍ପଲତା ତଳେ ଥାଇ ଯେ ନ ଫଳେ, ନିରାଶ ହୋଇବା କେଡେ ଲାଜ, ରତ୍ନାକର ହୋଇ ରତ୍ନରଙ୍କ ଯହିଁ, ଏକଥା କେମନ୍ତେ ଦେବରାଜ ।( ଆରତ ଧ୍ୱଂସନ-ନିତ୍ୟାନନ୍ଦ ଦାସ) ।

ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହର ହରେ ହରେ ରାମ ହରେ ରାମ, ରାମ ରାମ ହରେ ହରେ ।

## ହରିକଥା - ୫

"ଭାବି ଯା ନଥିଲି ମନେ, ବସାଇ ଉଚ୍ଚ ଆସନେ ସୁଖ ସଙ୍ଗେ ଦୁଃଖ ଦେବା, ରୀତି ତ ନଥିଲା ଜଣା । ମୋହପରି ଦିନହୀନ, ଧରାଧାମେ ନାହିଁ ଶୁଣା, କୃପାସିନ୍ଧୁ, ଦିନବନ୍ଧୁ ! କାହିଁକି କରୁଣା ଊଣା ?" ଶ୍ରୀମଦ୍ ଭାଗବତରେ ପରୀକ୍ଷିତ ଏବଂ ଶୁକଦେବ କଥୋପ କଥନରେ ବା ପ୍ରଶ୍ନୋତ୍ତରରେ ଲକ୍ଷ୍ୟ କଲେ ଜଣାଯାଏ, ପ୍ରତ୍ୟେକ ମନୁଷ୍ୟ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଥାଏ । ସୀମା ଲଂଘନକାର୍ଯ୍ୟ ପାଇଁ ଦଣ୍ଡ ଥାଏ । ଏହି ଦଣ୍ଡ କ'ଣ ଓ ପରିମାଣ କ'ଣ ତାର ମଧ ସୀମା ଅଛି । ଏହାର ନାମ ପ୍ରାୟଶ୍ଚିତ । କାର୍ଯ୍ୟକଳାପଟି ଯଦି ହୃଦୟରେ ବ୍ୟାଘାତ ଦିଏ, ତେବେ ତାହା ଅଭିଶାପ ଯୋଗ୍ୟ । ଏହି କ୍ଷେତ୍ରପାଇଁ ପରୀକ୍ଷିତଙ୍କୁ ବ୍ରହ୍ମ ଅଭିଶାପ ହେଲା ଏବଂ ମୁକ୍ତିପଥ ଏହାର କ'ଣ ? ମନୁଷ୍ୟ କ୍ଷେତ୍ର ବିଶେଷରେ ଭଗବାନଙ୍କୁ ଅନ୍ତର ସହିତ ଖୋଜେ ଏବଂ ପାଇଥାଏ, ଏହି ବିଶ୍ୱାସ ଥିଲା ? ଶୁକଦେବ ହେଉଛନ୍ତି ପଥପ୍ରଦର୍ଶକ ମାତ୍ର । ମନେ ବିଚାର ନୃପରାଜ-ଅବଜ୍ଞାକଲା ମୋତେ ଦ୍ୱିଜ । କ୍ଷୁଧାତୃଷାରେ ଜଳେ ମନ କ୍ଷଣ କ୍ଷଣକେ ଅଚେତନ । ପ୍ରଚଣ୍ଡ କ୍ରୋଧ କୋପନଳେ ମୃତ ଭରଗ ଧନୁ ହୂଳେ ବ୍ରାହ୍ମଣ ଗଳେସ୍ପର୍ଶ ଦେଲା- ତତ୍‌କ୍ଷଣେ ନିଜ ପୁରେ ଗଲା । ପିତାର କାନ୍ଧେ ସର୍ପ ଦେଖି କୋପେ ଚଞ୍ଚଳ କଲା ଆଖି ସଂସାର ଧର୍ମ ଯେ ପାଳକ ଦେଖି ତାହାର ଅବିବେକ । ଶ୍ୱାସନ ପ୍ରାୟ ଚେଷ୍ଟାକଲା ହେଲେ ଏ ବିପ୍ରକୁ ଲଙ୍ଘିଲା । ଅକର୍ମ ସମ୍ପଦି ବିଚାର ଅନ୍ୟାୟ କଲା ଯେ ପାମର । ଆକୁ ସପତ ଦିନ ଶେଷେ-

ତକ୍ଷକ ଆସି ମହାରୋଷେ । ତା'ର ଶରୀର ବେଗେ ଖାଉ-ଏ ପାପୀ ଜଗତେ ନଥାଉ । ଏ ନର ଲୋକେ ସାଧୁ ଯେତେ-କୋପ ନବସେ ତାଙ୍କ ଚିତ୍ତେ । ପ୍ରାଣୀଙ୍କ ଦୋଷ ନ ଧରନ୍ତି-ସମତା ଦୃଷ୍ଟି ଆଚରନ୍ତି । ଦ୍ୱିଜେ ଅବଜ୍ଞା ମନେ କଲି-ନିକଟେ ମରଣ ଲୋଡିଲି । ଏ ପାପ ବିନାଶନ ହେତୁ-ବେଗେ ବିଧାତା ମୋତେ ଚିନ୍ତୁ । କହଇ ମୋତେ ସର୍ପଖାଉ-ଏ ମୋର କୁଳେ ପାପ ନୋହୁ । ବ୍ରାହ୍ମଣ ଶାପ କୋପାନଳେ-ଏମୋର ନିଜ କର୍ମ ଫଳେ । କୃଷ୍ଣ ବିଷରେ ହେଉ ମତି-ତାର । ସେବକ ସଙ୍ଗ ଗତି । ମୋହର କର୍ମଫଳ ନେଇ-ଜନ୍ମ ହୋଇବି ଯହିଁ ତହିଁ । ଏମନ୍ତ ଚିନ୍ତି ରାଜରଷି-ଶୁକ ମିଳିବେ ବେଗେ ଆସି । ମହୀ ଭ୍ରମଇ ଇଚ୍ଛା ସୁଖେ-କୃଷ୍ଣର ନାମ ଗାଇ ମୁଖେ । କହ ତ ଜୀବନ ଯିବାକାଳେ କିବା ସାଧିତି ମହୀତଳେ । କିବା ଶୁଣିବି କର୍ଣ୍ଣ ପଥେ-ସ୍ମରଣ କି କରିବି ଚିତ୍ତେ । କିବା ବଚନ ଉଚ୍ଚାରଣ, ଭଜିବି କାହାର ଚରଣ ।' ଏହିଠାରୁ ଆରମ୍ଭ ହୋଇଛି ଶୁକଦେବଙ୍କ ଆଶ୍ୱାସନାବାଣୀ । ଏହାହିଁ ହରିକଥା ବା ହରିଦର୍ଶନ । ପୂର୍ବେ ଖଟ୍ୱାଙ୍ଗ ରାଜାଥିଲା-ସର୍ଗେ ଦେବଙ୍କ ହିତ କଲା ଆୟୁଷ ଅଛି ମୋର କେତେ, ଦେବେ କହିଲେ, ଶାସ୍ତ୍ର ମତେ । ବୋଇଲ ବରେ କାର୍ଯ୍ୟନାହିଁ-କ୍ଷୀଣ ଆୟୁଷ ମୋର ଦେହୀ । ମୁହୂର୍ତ୍ତେ ଅଛି ତୋ ଜୀବନ, ତା ଶୁଣି ସନ୍ତୋଷ ତା ମନ । ବୋଇଲେ ବରେ କାର୍ଯ୍ୟନାହିଁ-କ୍ଷୀଣ ଆୟୁଷ ମୋର ଦେହୀ । ମୂହୂର୍ତ୍ତେ ନାମ ଉଚ୍ଚାରିଲା-ଅନ୍ତେ ସେ ଗୋବିନ୍ଦେ ପଶିଲା । ଏବେ ସପତ ଦିନ ଯାଏ-ଜୀବନ ଅଛି ତୋର ଦେହେ । ଏବେ ହରିଙ୍କୁ ଆଶ୍ରେକର ଶ୍ରବଣେ ବଦନେ ଉଚ୍ଚାର । ଯେ ଅନ୍ତକାଳେ ହରିବାଣୀ-ମୁଖେ ଉଚ୍ଚାରି କର୍ଣ୍ଣେ ଶୁଣି । ଯେତେ ବିଷୟେ ଆତ୍ମା ଭେଦି, ଅସଙ୍ଗ ଅସ୍ତ୍ରେ ତାହା ଛେଦି । ବେଗେ ପଶନ୍ତି କୃଷ୍ଣ ଭାବେ-ଶୁଣ କହିବା ତୋରେ ଏବେ । ଏହିଠାରୁ ଆରମ୍ଭ ହେଲା ସାଧାରଣଙ୍କ ପାଇଁ ଗୁରୁ ଶିଷ୍ୟ ପରମ୍ପରା । ଏହି ସପ୍ତଦିନ ମଧ୍ୟ ମହାମୁନି ଶୁକଦେବ ପରିକ୍ଷିତଙ୍କୁ ହରି କଥାମୃତ କହିଛନ୍ତି । ଦ୍ୱିତୀୟ ସ୍କନ୍ଦରେ ବିସର୍ଗ ପଞ୍ଚମ ସ୍କନ୍ଦରେ ସ୍ଥିତି-ଷଷ୍ଠ ସ୍କନ୍ଦରେ ପୋଷଣ ସପ୍ତମ ସ୍କନ୍ଦରେ ନିରୋଧ ଏକାଦଶ ସ୍କନ୍ଦରେ ମୁକ୍ତି, ଦ୍ୱାଦଶ ସ୍କନ୍ଦରେ ଆଶ୍ରୟ । ତଥାପି ତକ୍ଷକ ଦଂଶନ ପ୍ରତି ପରୀକ୍ଷିତଙ୍କର ଭୟଅଛି । ଏବେ ସନ୍ଦେହ ମୋର ମନ, ତକ୍ଷକ କରିବ ଦଂଶନ । ଏ କାଳରୂପୀ ମହାସର୍ପ-ହରିବ ମୋର ଏବେ ଦର୍ପ । ଦଂଶିବ ଲୋଚନେ ଦେଖିବି, କେମନ୍ତେ ଦେହ ସମର୍ପିବି । ଏଣୁ ମୋ ଚିତ୍ତେ ଭୟପାଇ ତୁମ ଛାମୁରେ କହିବଇଁ । ଦୁଃସହସଙ୍କଟ କଷଣ, ଏଥିରୁ କର ପରିତ୍ରାଣ । ଶୁକଦେବ ଆଶ୍ୱାସନା ଓ ସାହସ ଦେଲେ, ଶୁଣ ପରୀକ୍ଷିତ ପତି, ମରିବୁ ବୋଲି ଯେଉଁ ଭୀତି । ପ୍ରାଣୀ ତା ଅଜ୍ଞାନେ କରନ୍ତି-ତୁ ଏବେ ଛାଡି ଏହି ଭ୍ରାନ୍ତି । ଛୋଟ ଛୋଟ ପିଲାଙ୍କୁ ଡାକ୍ତର

ଇଞ୍ଜେକ୍‌ସନ୍ ଦେବା ସମୟରେ ଛୁଞ୍ଚିକୁ ଦେଖି ଯେପରି ଚିତ୍କାର କରେ ଓ ଭୟ କରେ କାହିଁକି ? କାରଣ ଏହାଦ୍ୱାରା ତାର ଶରୀର ଯନ୍ତ୍ରଣା ପାଇବ କାଟିବ। ଠିକ୍ ଶେଷ ମୁହୂର୍ତ୍ତରେ ତଥାପି ପରୀକ୍ଷିତଙ୍କୁ ମୃତ୍ୟୁ ଭୟ ଛାଡିନାହିଁ। ଶୁକଦେବ ପୁନରାୟ ଆଶ୍ୱାସନା ଦେଇ କହିଲେ, ଉତ୍ପତ୍ତି ସ୍ଥିତି ଯାର ନାହିଁ-ବିନାଶ ହୋଇବ କିମ୍ପାଇଁ। କାରଣ ସଂସାର ପ୍ରତି ମୋହ, "ପୁତ୍ର ପୌତ୍ରାଦି ଏ ତୋହର କେହି ଯେ ନୁହଁନ୍ତି କାହାର। ସମ୍ପତ୍ତି ଅଇଶ୍ୱର୍ଯ୍ୟ ମତ-ବସୁଦେବ ମାୟା ସଂଚିତ। ସ୍ୱପ୍ନେ ଯେ ମୁଣ୍ଡକାଟ ଯାଇ-ପ୍ରାଣ ତ୍ୟାଗ ହୋଇଣ ଥାଇ। ନିଦ୍ରାଭଙ୍ଗେ ଯେ ମିଥ୍ୟା ହୋଇ ଏଭାରେ ଜନ୍ମମୃତ୍ୟୁ ଦୁଇ। ଘଟର ବିନାଶ ହୁଅଇ-ଜନ୍ମ ମରଣ ତାର ହିଁ। ପିଲାକୁ ଇଞ୍ଜେକ୍‌ସନ୍ ଦେଲା ବେଳେ ପିତାମାତା ଚିକିତ୍ସକ ଆଶ୍ୱାସନା ଦିଅନ୍ତି, କିଛି ହେବନି, ପିମ୍ପୁଡି କାମୁଡିଲେ ଯେପରି ଲାଗେ ଠିକ୍ ସେତିକି କାଟିବ। ତୋ ମାମୁଁ ଘର କୁଆଡେ ? ପିଲାଟି ଟିକିଏ ହସିଲା ବେଳେ ଛୁଞ୍ଚି ପଶିଯାଏ ଏବଂ ଶରୀର ଭେଦ କରେ, ତାପରେ.... ? ଶୁକଦେବ ଏଠାରେ ମୃତ୍ୟୁରୂପକ ଚିକିତ୍ସକ, ଛୋଟପିଲା ହେଉଛନ୍ତି ପରୀକ୍ଷିତ। ବ୍ରହ୍ମଶାପୁଁ ତକ୍ଷକ ଆସି ତୁମ୍ଭର ଚରଣେ ଯେ ଦଂଶିବ। ସେ ବିଷ ଅଗ୍ନିରେ ଏଦେହ, ଦହି ହୋଇବ ଭସ୍ମମୟ। ତୁମ୍ଭେ ଯେ ତାଙ୍କୁ ନଦେଖିବ ତୁମ୍ଭଦେହେ ଜୀବେ ନଥିବ। ମାୟା ଶରୀର ନାଶଯିବ-ଜଗତ ପ୍ରତ୍ୟେକ୍ଷ ଦେଖିବ। ଶୁକ ଦେହ କହନ୍ତି ହେ ପରୀକ୍ଷିତ, 'ମଉନବ୍ରତ ହୋଇ ବସ-ପଦାର ବିନ୍ଦେ ମନ ରସ। ଲୟ ଲଗାଅ ଏ ଶରୀରରେ, ନିର୍ବାଣେ ମିଶ ମୁକ୍ତିଦ୍ୱାରେ। ଏବେ ପରୀକ୍ଷିତଙ୍କର ମୃତ୍ୟୁଭୟ ଉଭେଇ ଗଲା ଓ ହରିଙ୍କୁ ସ୍ମରଣ କଲା "ହେ ପ୍ରଭୁ ପରମ ପୁରୁଷ-ମହିମା ନ ଜାଣଇ ତୋର, ମୋ ଆଶା ରଖିତୋ ପୟର। ନମସ୍ତେଦେବ ଚାରୀୟଣ, ଭବଜଳରୁ କରତ୍ରାଣ। ପରୀକ୍ଷିତଙ୍କର ଶେଷବାର୍ତ୍ତା ମରଣେ ଭୟ କିଛି ନାହିଁ, ଆଜ୍ଞାନ ଜନ ଯେ ମରଇ। ତହିଁ ମୋହର ଭୟ ନାହିଁ, ବହ୍ମନିର୍ବାଣ ଜ୍ଞାତା ହୋଇ। ତୁମ୍ଭର ଭାବ ତୁମ୍ଭେ ଜାଣ ତୋ ବିନା ନାହିଁ ପରିତ୍ରାଣ। ଆଶ୍ରା ବିଶ୍ରାମ ବାନା ତୋର-ମୋ ଆଶା ରଖ । ତୋ ପୟର। ନମସ୍ତେ ଦେବ ନାରାୟଣ-ଭବ ଜଳରୁ କର ପ୍ରାଣ। ସର୍ବ ଶେଷରେ ପରୀକ୍ଷିତ ଶେଷବାର୍ତ୍ତା 'ଶୁଣାଇ ବିଷ୍ଣୁଙ୍କ ଅଙ୍ଗରେ ଲୀନ ହେବେ। ତେବେ ସେ କ'ଣ କଲେ ? "ଆତ୍ମାକୁ ବ୍ରହ୍ମର ରନ୍ଧ୍ରେ ନେଇ ସୁଷମୁନା ଦ୍ୱାରେ ରୁହଇ। ଷଟଚକ୍ର ଭେଦି ଭୂରୁ ମଧେ ପରମାତ୍ମାର ଭାବ ଭେଦେ। ବିଷୟ ସଙ୍ଗକୁ ସେ ଦୂର ନାହିଁ ବାହ୍ୟନ୍ତର ମନର। ଏକାକ୍ଷର ବ୍ରହ୍ମେ (ଓଁ) ପ୍ରବେଶି, ଯାତନା ଶରୀର ବିନାଶି। ପରମ ପଦକୁ ଲଭିଲେ-ବିଷ୍ଣୁ ଅଙ୍ଗରେ ଲୀନ ହେଲେ।" ଛଅ ଗୋଟି ଚକ୍ର କ'ଣ କ'ଣ ? ମୂଳାଧାର,

ସ୍ୱାଧିଷ୍ଠାନ, ମଣିପୁର, ଅନାୟ, ବିଶୁଦ୍ଧି, ଜ୍ଞାନଚକ୍ର, ସହସ୍ରା (ମସ୍ତିଷ୍କର ସର୍ବଶେଷ ଅଂଶ) ଶୁକ ଦେବଙ୍କୁ ପରୀକ୍ଷିତ ଯେତେଗୋଟି ପ୍ରଶ୍ନ ପଚାରି ଥିଲେ, ସେଗୁଡିକ ପାଇଁ ସେ ଜୀବନ ତ୍ୟାଗକଲେ। ତାଙ୍କର ପ୍ରଶ୍ନଗୁଡିକ ଥିଲା। ଯାହା ଶୁଣିବାର ଯୋଗ୍ୟ, ଯାହା ଜପର ଯୋଗ୍ୟ, ଯାହା ସ୍ମରଣ କରିବାର ଯୋଗ୍ୟ, ଯାହା ଭଜନ କରିବାର ଯୋଗ୍ୟ, ଯାହା ଏ ସବୁର ଅଯୋଗ୍ୟ। କହ ଜୀବନ ଯିବା କାଳେ କିବା ସାଧିବି ମହୀତଳେ। କିବା ଶୁଣିବି କର୍ଣ୍ଣପଥେ-ସ୍ମରଣ କି କରିବି ଚିତ୍ତେ। କିବା ବଚନ ଉଚ୍ଚାରଣ, ଭଜିବି କାହାର ଚରଣ। ମନୁଷ୍ୟ ଜନ୍ମର ଏତିକି ଲାଭ ହେଉଛି, ସାଂଖ୍ୟ ଦ୍ୱାରା ହେଉ, ଯୋଗ ଦ୍ୱାରା ହେଉ ନିଷ୍ଠାର ସହିତ ହେଉ ମନୁଷ୍ୟ ତା'ର ଅନ୍ତିମ ସମୟରେ ଯେପରି ନାରାୟଣଙ୍କୁ ସ୍ମରଣ କରିପାରିବ।

"ସନ୍ତୋଷ ଚିତ୍ତେ ତୁହି ହରିଙ୍କୁ ଭଜ, ସଂସାର ପଡି ରହି ନପାଅ ଲାଜ। ସବୁଟି ମିଛ ହରି ନାମଟି ସତ-ଶ୍ରୀକୃଷ୍ଣ ପାଦ ପଦ୍ମେ ଦିଅତୁ ହରି ନାମଟି ସତ-ଶ୍ରୀକୃଷ୍ଣ ପାଦ ପଦ୍ମେ ଦିଅତୁ ଚିତ୍ତ। ୩୧। ସତ୍ୟ ମଣୁଛୁ ତୁହି ଭବ ସାଗର-ସରିଯାଉଛି ପରିମାୟୁ ତୋହର। ସନ୍ତୋଷ ହୋଇ ଦୃଢେ ଭଜ ଶ୍ରୀହରି ଶୋକ ସାଗରୁ ଯେବେ ହୋଇବୁ ପାରି। ୩୨ ।

(ସମୟ ବଦଳିଗଲାଣି। ପୂର୍ବ କାଳର ମଠ-ମନ୍ଦିର-ଭାଗବତ ଟୁଙ୍ଗିମାନଙ୍କରେ ବୃଦ୍ଧମାନଙ୍କର ଭାଗବତ ପାଠ ସହ ହରିକଥା-ହରିଦର୍ଶନ-ଭଜନ ଜଣାଣ ପ୍ରାୟ ଲୋପ ତା ଗ୍ରାମ୍ୟ ନୀତି-ଗ୍ରାମ୍ୟ ଭାଷା ବ୍ୟବହାର ଏସବୁ ଉପଭୋଗ କରି କରି ଅରୁଚି ଲାଗିଲାଣି। କ୍ରମଶଃ ପୂର୍ବ ସଂସ୍କୃତି ସ୍ଥାନ ବିଶେଷରେ ଫେରି ଆସୁଛି। ତେଣୁ ଅତୀତରେ ଭାଗବତ ପାଠ-ଆଲୋଚନା ଭାଗବତୀଙ୍କ ମୁଖରୁ ଶୁଣିବାକୁ ମିଳୁଥିଲା। ପୁରୁଣା କାଳିଆ କବିମାନଙ୍କର ଭଜନ ଜଣାଣ ଆବୃତ୍ତି କରାଯାଉଥିଲା। ସେହି ପୁରୁଣା କାଳିଆ ଲୋକ ଆଉ ନାହାନ୍ତି। ତାର ପୁନରୁଥାନ ଓ ପ୍ରଚଳନ ପାଇଁ ଓଡିଶାର ସମସ୍ତ ମଠ-ମନ୍ଦିର-ଭାଗବତ ଟୁଙ୍ଗିରେ ପୁନରାୟ ଏହା ଆରମ୍ଭ ହେବା ପାଇଁ 'ହରିକଥା' ଲିଖିତ। ଛୋଟବେଳେ। ମହାପୁରୁଷ ନିତ୍ୟାନନ୍ଦ ଗୋସାଇଁଙ୍କ ମଠରେ ମୁଁ ଯେପରି ଶୁଣିଥିଲି ସେହି ଧାରରେ ଉପସ୍ଥାପନ କରୁଛି। ହରିବୋଲ।

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ହରେ ରାମ ହରେ ରାମ ରାମ ରାମ ହରେ ହରେ।

# ହରିକଥା - ୬

'ପଞ୍ଚମେ ସିଦ୍ଧ ଅବତାରେ ଜନ୍ମିଲେ କଦର୍ମର ଘରେ, ନାମ ଯେ କପିଳ ବୋଲାଇ-ପିତା ମାତାଙ୍କୁ ଜ୍ଞାନ କହି।' ପ୍ରଶ୍ନ-ନର୍କ କ'ଣ ? " ନରକ ବୋଲି ଯାକୁ କହି-ସ୍ତିରୀ ସମ୍ଭୋଗ ସୁଖ ଏହି। ଯେବେ ନରକେ ପଡିଥାଇ-ଅତ୍ୟନ୍ତ ସୁଖ ତା ମଣଇ। କରଇ ନରକ ଆହାର-ତଥାପି ଦୁଃଖନୁହେ ଦୂର।(୩/୩୦/୧୨୫) ନର୍କ କ'ଣ ? ମାତା ଦେବହୂତୀ ଓ ଭଗବାନ କପିଳ (ମାତା-ପୁତ୍ର)ଙ୍କ ମଧ୍ୟରେ ଜ୍ଞାନ ମାର୍ଗର କଥୋପକଥନ। ନର୍କ ଓ ସ୍ୱର୍ଗ ମଧ୍ୟରେ କି ପ୍ରଭେଦ ଅଛି। ପ୍ରଥମେ ସେ ସାଂସାରିକ ଜୀବନ କଥା ବର୍ଣ୍ଣନା କରୁଛନ୍ତି। ଆକାଶ ମେଘଦ୍ୱାରା ଅନ୍ଧକାର ଘୋଟିଯାଏ କିନ୍ତୁ ବାୟୁ ସେହି ମେଘମାନଙ୍କୁ ତଡିଦିଏ। କିନ୍ତୁ ମେଘ କ'ଣ ଏକଥା ବୁଝିପାରେ ? ସେହିପରି ମନୁଷ୍ୟ କାଳ ବଶରେ ପରିଚାଳିତ ହୁଏ। କିନ୍ତୁ କାଳର ପ୍ରବଳ ବଳକୁ କ'ଣ ଜାଣିପାରେ ? ଅତଏବ ମନୁଷ୍ୟ ଯାହା ଚାହେଁ, ଭଗବାନ ତାହାକୁ ନଷ୍ଟକରନ୍ତି। କିନ୍ତୁ ମନୁଷ୍ୟ କ'ଣ ବୁଝିପାରେ ? ସୁଖଲାଭ ଆଶାରେ ବଡ କଷ୍ଟରେ ଧନ ସଂଗ୍ରହ କରେ। କ'ଣ ସେ ସମସ୍ତ ଭୋଗ କରେ ? ଅତଏବ ମନୁଷ୍ୟ ଗୋଟିଏ ମନ୍ଦମତି ଜୀବ। ଅନିତ୍ୟ ଏ ସଂସାର ଏବଂ ଶରୀର। ତା'ର ନିଜର ସ୍ତ୍ରୀ-ସନ୍ତାନ-ଘର-ବିଷୟବୋଝ। ଗୋଟିଏ ବୋଝିଆ ଧୋବାର ଗଧ ହୋଇ ପରର ମଇଳା ଲୁଗାପଟା ବହନ କରେ। ଚଉରାଶୀ ଲକ୍ଷ ଯୋନିରେ ଜୀବ ଭ୍ରମଣ କରେ ପୁଣି ସେହି ଯୋନିପାଇଁ ପାଗଳ ହୋଉଥାଏ। ତା'ର ଆସକ୍ତିଭାବ ବିରକ୍ତି ଭାବରେ ପରିଣତ ହୁଏ ନାହିଁ। ଅତଏବ୍ ସେ ନରକ ଭୋଗରୁ ନିବୃତ୍ତ ନୁହେଁ। ନିଜର ସ୍ତ୍ରୀ-ପୁତ୍ର-ଗୃହ-ପଶୁ-ଧନ-ବନ୍ଧୁବାନ୍ଧବଙ୍କ ପ୍ରତି ଆସକ୍ତି ବଢେ ଏବଂ ସେମାନଙ୍କ ପ୍ରତି ଆସ୍ତକ୍ତି ବଢେ ଏବଂ ସେମାନଙ୍କ ପ୍ରତି ସର୍ବଦା ପାପକର୍ମ କରୁଥାଏ, ଏହାର ନାମ ନର୍କ। କୁଳଟା ସ୍ତ୍ରୀର କପଟ ପୂର୍ଣ୍ଣ ପ୍ରେମ ତାକୁ ଘାରୁଥାଏ, " ଏ ଜୀବ ସୁଖ ଭୋଗ ପାଇଁ-ଅର୍ଥ ଉପାର୍ଜନରେ ଭ୍ରମଇ। ବିବିଧ ଦୁଃଖ ତା ସଂଚଇ-ସେ ଅର୍ଥ କାଳ ତା ହରଇ। ସେ କାଳ ସୁଖେ ଜୀବେ ରହି-ନାନା ବିବାଦେ ହିଂସା ବହି। କରନ୍ତି ନାନା ଛନ୍ଦେ ମାୟା-ହୃଦେ ନ ବସେ ଜୀବେ ଦୟା।" କଷ୍ଟାର୍ଜିତ ଧନର ଭବିଷ୍ୟତ ଏହିଭଳି। ଆଛା ' ମନବୋଧ ଚଉତିଶା କ'ଣ କହେ" ଧର୍ମ-ଅଧର୍ମ କଥା ନଜାଣୁ ତୁହି, ଧନ୍ଦି ହେଉଛୁ ଧନ ଅର୍ଜିବା ପାଇଁରେ। ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ, ଧର୍ମରେ ଆତଯାତ ହେଉଛି ମହୀରେ। ନିନ୍ଦିତ କର୍ମକଲେ ନିନ୍ଦା ପାଇବୁ, ନରକେ ପଡି କେତେ ଦୁଃଖ

ସହିବୁରେ-ନିମିଷେ ମାତ୍ର ମୁଖେ ନବୋଲୁ ହରି, ନାଶ ହେତୁକୁ କିମ୍ପା ଅଛୁ ଆବୋରିରେ । ଧିକ୍ ଯାଉଏ ଜୀବନ, ଗରୁଡ ପଛରେ ରହି ନକଲୁ ଦର୍ଶନ, ଧିକ୍ । ପୁଣି ଅଛି ହିଂସା-ରାଗ-ତମ-ଇର୍ଷା-ଲୋଭ ପଥ ଦେଇ ମିଳୁଥିବା ଧନରେ ପୋଷୁଥାଏ କୁଟୁମ୍ବ, ସେମାନଙ୍କ ଠାରୁ ଯାହା ବଳେ ନିଜେ ଚଳେ ନର୍କକୁ ବାଟ ସିଧାସଳଖ ଫିଟିଗଲା । ମନ୍ଦଯଶା ଆସିଲା, ବୃଦ୍ଧ ବଳଦ ଅବସ୍ଥା । ଚିନ୍ତାତୁର ହୋଇ ଦୀର୍ଘଶ୍ୱାସ ଛାଡେ । କିଏ ପଚାରେ ? ଯେଉଁମାନଙ୍କୁ ଦିନେ ପୋଷୁଥିଲା, ସେମାନେ ମନା କଲେଣି ପୋଷି ପାରିବୁ ନାହିଁ । ଆମେ ଦୁଇ, ଆମର ଏକ ବା ଦୁଇ । ଦରମା-କିଳାପୋତେଇ ମଗା-ଯବା ବି ଅଭାବ । ବୁଢା, ଖଣ୍ଡିଏ ବିପିଏଲ୍ କର । ସରକାର ପୋଷିବେ । 'ଅସତୀ ଦୁଷ୍ଟନାରୀ ଘରେ-ବିବିଧ ଛନ୍ଦମାୟା କରେ । ତାର ସୁବେଶ ପ୍ରୀୟଥାଇ-ସେବକ ଜନ ପ୍ରାୟ ହୋଇ । ତାହାଙ୍କ ବାକ୍ୟ ବିଲଘଂନ-କରିନପାରେ ରାତ୍ରଦିନ । ସେନାରୀ ବଶେ ବିହରଇ-ନିଶି ଦିବସେ ମନ ଦେଇ । ତାହାକୁ ସୁଖ ଭୋଗ ପ୍ରୀତି-ନରକେ ଓଟାରି ପକାନ୍ତି । ନରକ ବୋଲିୟାକୁ କହି-ସ୍ତିରୀ ସମ୍ଭୋଗ ସୁଖ ଏହି । ଏହା ନଜାଣି ମୁକପ୍ରାଣୀ-ଦୁଃଖକୁ ସୁଖ ପରିମାଣି ।' ଏହି କଥା ଭଗବାନ କପିଳ ତାଙ୍କ ମାତା ଭବହୂତିଙ୍କୁ ଜ୍ଞାନମାର୍ଗରେ ବୁଝାଉଛନ୍ତି । ଆଧୁନିକ ବାଦ କହେ, ଅଜଣା ଅଚିହ୍ନା ବୃକ୍ଷ ଦେଖି, ଚିହ୍ନିବାକୁ ମନ ହେଲା, ନିମ୍ନରୁ ଉର୍ଦ୍ଧ୍ୱକୁ ଚାହିଁଲା ସମୟେ ଦୁଇଟି ଫଳ ଦିଶିଲା । ପୂର୍ବରୁ ଅଜଣା ଗଛଚଢା ବିଦ୍ୟା ଜଣା ଯେ ନଥିଲା ମୋତେ, ଫଳ ଚାଖିବାକୁ ସଉକ ବଢିଲା କୁଣ୍ଡାଇ ଚଢିଲି ସେତେ ।ଗୋଟିଏ ଫଳଯେ, ମୁଠାରେ ରହିଲା, ଲୋଭ ହେଲା ଅନ୍ୟ ଲାଗି, ଅନ୍ୟହସ୍ତେ ଆର ଫଳକୁ ଧରିଲି ଗୋଡ ଯେ ନହେଲା ଭାଗି । ଖସିଗଲା ଗୋଡ ଗାଢରେ ପଡିଲି, ଘାସ ସ୍ଥଳେ ଲୁଚିଥିଲା, ଭାଇରେ ଭାଇରେ ଯେତେଯେ ଡାକିଲି, ପାଖରେ କିଏ ବା ଥିଲା ? ଫୁଲ ଯେ ସେ ନୁହେଁ, ଫଳ ବି ସେ ନୁହେଁ, ଅନାଇ ମଲି । ସେହି ଦିନଠାରୁ ପଡିଛି ଗାଢରେ, ବୃକ୍ଷକୁ ଚାହିଁ ରହିଲି" । (ନିଜସ୍ୱ) ସେହି ନର୍କ ଯାତନା । ଏହି ନର୍କ ଯାତନା ଜୀବନର ଏପଟରେ ପୁଣି ଆରପଟ ଅଛି । ଚଉରାଶୀ ପ୍ରକାର ନର୍କ ଯାତେନା ।ଯାହା କରିଥାଏ ତାକୁ ଭୋଗୁଥାଏ ପୁଣି ବାକିତକ ଭୋଗିବାକୁ ପଡିବ । ଆସୁଛି । କିଏ ? ପିଆଦା ।ହିଁ, ଯମରାଜା ପଠାଇଛି । କାହିଁକି ? "ଚିନ୍ତାର୍ତ୍ତିଜରେ ଦୁଃଖମନେ-ରୋଗ ବଢଇ ପ୍ରତିଦିନ । ଆହାର ବିନେ ଚିନ୍ତାଜନ୍ମେ ନପାରେ ମନ୍ଦ ହୁତାଶନେ । ଆଉ ଦାନା ରୁଚୁନାହିଁ । ସରିଗଲା । ପୀଡିତ ଦୁଃଖ ମୃତ୍ୟୁ ଦୁଃଖ ଘାରେ-କୁଟୁମ୍ବ ଭରଣ ବ୍ୟାପାରେ ।ଶୁଣ ଜନନୀ ଏକଚିତ୍ତେ-ସଂସାର ସୁଖ ଦୁଃଖ ଏତେ ।

ସେ ସର୍ବେ କରନ୍ତି ରୋଦନ ଶ୍ରବଣେ ଡାକନ୍ତି ସଘନ।" ବାପା! ହରିନାମ କହ।ରାମନାମ କହ।ସେହି ହିଁ ମୁକ୍ତି ପଥର ପାଥେୟ। ଗୋଟିଏ ତେଲିବୁଢ଼ା ଥାଏ। ଧନ-ଧାନ୍ୟ-ଗୋପ-ଲକ୍ଷ୍ମୀ। ଯାହା ପାଖରେ ଯେଉଁ ଅଂଶଟି ବେଶୀ ଥାଏ ସେ ଧନୀ। ତେଲିର ବେଶୀଧନ ଥାଏ। ତା ଦ୍ୱାରା ପ୍ରତିଦିନ ବହୁତ କ୍ରେତା ଲୁଣ୍ଠ ହୁଅନ୍ତି। ତେଣୁ ପିତଳ ଗୌଣୀରେ ବୁଢ଼ା ଏତେଶୀଘ୍ର ମାପ କରେ ଯେ, ଚାରି ପାଆର ପଇସା ନିଏ, ତିନି ପାଆ ଧାନ ଦିଏ। ତେଣୁ ମାପିଲା ବେଳେ କହେ ତିନି ତିନି ପାଆ, ତିନି ତିନି ପାଆ ମୃତ୍ୟୁ ପୂର୍ବରୁ ପୁତ୍ରଗଣ କର୍ଣ୍ଣ କୁହର ନିକଟରେ କହନ୍ତି, ତିନି ତିନା ପାଆ। ଅତଏବେ ହନୁ ମଲାବେଳେ ସତକହେ। ଏହି ହେଉଛି ମୃତ୍ୟୁପୂର୍ବ ନର୍କ ଭୋଗ। "ହରିନାମେ କି ରସ ଅଛି, ପାନ କଲା ଲୋକ ସିନା ଜାଣିଛି,ହରିନାମେ"ସେହିପରି ବୋତଲରେ କି ରସ ଅଛି, ପିଇଲା ଲୋକଟି ସବୁ ଜାଣିଛି।"ସେହିପରି "ଅମୃତ ସମ ଯୋନି ଦିଶେ, ଚାଖିଲା ଲୋକଟିକୁ ବାସେ।"ହରିବୋଲ।ଦୋହା "ଅନୁସରିତ ପ୍ରଭୁ କାଳ ଯାକଗଲା ସରିତ' କ'ଣ ବିତରଣ କଲେ କେତେଉଣା, ହୁଅନ୍ତା କରୁଣା ସହିତ।(ଘୋଷା) କାଳ କିଙ୍କର ଭୟରେ ଅଜାମିଳ, ପୁତ୍ରୋପଚାରରେ ଡାକିତ' ପରମ ପାଦ ପାଇଲା ଆପଣଙ୍କ, ନାମ ମହିମା ଏପରିତ। ଅନୁସରିତ,ପ୍ରଭୁ କାଳ ଯାକ ଗଲା ସରିତ।" ମନୁଷ୍ୟ ନିଜର କୁଟୁମ୍ବ ପୋଷଣ ପାଇଁ ଯେଉଁସବୁ ଅନ୍ୟାୟ କରିଥାଏ,ଈଶ୍ୱରଙ୍କ ଦ୍ୱାରା ମଞ୍ଜୁରୀପ୍ରାପ୍ତ ତାର କୁଫଳ ସେ ନରକରେ ଭୋଗ କରେ ଏବଂ ସେଠାରେ ସବୁ କିଛି ଚାଲିଗଲା ବୋଲି ଭାବି ବ୍ୟାକୁଳ ହୁଏ। ତାହା ଅଧର୍ମ ଉପାୟରେ କୁଟୁମ୍ବ ପୋଷିବା ଉପାୟ। ଗରିବ ମାନଙ୍କୁ ଶୋଷଣ କରି ଯେଉଁମାନେ ବଡଲୋକ ହୁଅନ୍ତି ସେମାନେ ଅନ୍ଧ ତାର୍ମସ୍ତ ନରକେ ପଡନ୍ତି। ଯେଉଁମାନେ ଅଭ୍ୟାସଗତ, ପାଠକେ ବିଚାର କରନ୍ତି। ଏଠାରେ କେତେଗୋଟି ନରକ ବିଷୟରେ କହିବା ? ନରକ ବୋଲି ଯା'କୁ କହି ସ୍ତିରୀ ସମ୍ଭୋଗ ସୁଖଏହି।ତାମିସ୍ର-ଅନ୍ଧତାମିସ୍ର-ରୌରବ-କୁମ୍ଭୀପାକ-କାଳସୂତ୍ର-ଅସିପତ୍ରବନ-ସୁକରମୁଖ-ଅନ୍ଧକୂପ-କୃମିଭୋଜନ-ସନ୍ଦଂଶ-ବଜ୍ରକଣ୍ଟକ-ବୈତରଣୀ-ପ୍ରାଣରୋଧ-ବିଶସନ-ଲାଳଭକ୍ଷ-ବିଷ୍ଠାପାନ-କ୍ଷାରକର୍ଦ୍ଦମ-ସୂଚୀମୁଖ, ଏହିଭଳି ୮୪ ପ୍ରକାରର ଦଣ୍ଡନୀତି ଅଛି ବର୍ତ୍ତମାନ ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ମଧ ନିମ୍ନ ବିଚାରାଳୟର ଦଣ୍ଡ ନୀତି ଠିକ୍ ସେହିପରି। ଅଧର୍ମ ଧର୍ମ ବେନିମତ-ଶ୍ରଦ୍ଧା ଅଶ୍ରଦ୍ଧା ଯେ ବିଦିତ। ସମାନ କର୍ମଫଳମାନ-କାହାର ନୋହେ ଭୋ ରାଜନ।ଅନ୍ତେ ଜୀବକୁ ଯହି ନ୍ୟନ୍ତି-ଯମରପୁରେ ଦଣ୍ଡ ଦ୍ୟନ୍ତି। ଦୋଷ ଯେ କର୍ମ ଅନୁସାରେ ଯେ ପ୍ରାଣ ଯେ କର୍ମ

ଆଚେରେ । ସେ କାଳପାଶେ ବନ୍ଦୀହୋଇ-ସତତ ନରକେ ପଡଇ । ପର ଦାରାରେ ପାପକରି-ଯେବେ ତାମସ ରୂପଧରି । ତେବେ ପଡ଼ଇ ସେ ଯେ ତହିଁ ଯାତନା ନରକ ଭୁଞ୍ଜଇ । ବଳାତ୍କାର ପୁଣି ଧରାପଡି ଯିବେ ବୋଲି ହତ୍ୟା ଦୋଷ । ଏଠି ସିନା ପୋଲିସକୁ ହାତ କରି ବିଚାରପତଙ୍କି ମୋଟା ଅଙ୍କ ଦେଇ ଖସିଜଯିବ, ହେଲେ ସେ ଦରବାର ? ସତରେ ଏହାକୁ ବିଶ୍ୱାସ କରାଯାଏ କି ? ଦୋଷ ପାଇଁ ଦଣ୍ଡ ଅଛି, ଏହା ଅସତ୍ୟ ନୁହେଁ । ଅତଏବ୍ ପାପ ପୂଣ୍ୟ ଅଛି । ପୁନର୍ଜନ୍ମ କଥା ବିଶ୍ୱାସ ଯୋଗ୍ୟ । ଭଗବାନ କପିଳ ମାତାଙ୍କୁ କହିଛନ୍ତି, ଭୋ ମାତା ଦେଖ ସୁବିଚାରେ-ନରକ ସ୍ୱର୍ଗ ଏହି ଠାରେ ନରକ ଯାତନା ଏତେକ-ସ୍ୱର୍ଗଟି ସୁଖ । ପାପ ସମ୍ପର୍କ ଦୋଷରୁ ସ୍ତ୍ରୀ ପରୁଷର ଏହିପରି ତାମିସ୍ତ-ଅନ୍ଧାତାମିସ୍ତ ଗୌରବ ଆଦି ନର୍କ ଭୋଗକରେ, କାରଣ ସେ କେବଳ ଅଧର୍ମରେ ଧନ ଅର୍ଜ୍ଜନ ଓ କୁଟୁମ୍ବ ପରିପୋଷଣ କରୁଥାଏ । ମନୁଷ୍ୟ ଶରୀର ପାଇବା ପାଇଁ ଆଉ ସମ୍ଭବ ହୁଏନାହିଁ । ନୀଚ ଯୋନୀମାନଙ୍କରେ ଜନ୍ମଲାଭ କରି ସମସ୍ତ ସାତନା ଭୋଗ କରେ । ପୁନରପି ଜନ୍ମମ୍ ପୁନରପି ମରଣଂ ପୁନରପି ମାତୃ ଜଠାରେ ଶୟନମ୍ । ଏ ଏକ ପ୍ରକ୍ରିୟା ମାତୃଗର୍ଭରେ ସଞ୍ଚରିବା ପାଇଁ ପୁଣି ଗୋଟିଏ ପୁରୁଷର ଆବଶ୍ୟକତା ଅଛି । ଏ ଜୀବଯେ କର୍ମ ଇଛଇ-ଈଶ୍ୱର ତହିଁ ନିଯୋଗଇ । ଏ ଜୀବଯେ କର୍ମ ବଶରେ-ପୁରୁଷରେ ଯେ ଆଶ୍ରେକରେ ।ପୁଣ ଏ ଦେହ ଧରିବାକୁ-ପ୍ରବେଶ ଜନନୀ ଗର୍ଭକୁ । କିପରି ? ସମସ୍ତେ ପିତା-ମାତା ହୁଅନ୍ତି କିନ୍ତୁ ସେମାନଙ୍କର ସରଳ ଉତ୍ତର ଯାହା ପ୍ରକୃତରେ ତାହା ନୁହେଁ । ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା,ଏତ ସତ କଥା କିନ୍ତୁ ? ତେବେ କାହିଁକି ଚିକିତ୍ସକଙ୍କ ପାଖକୁ ଧାଉଁଛି ? ବଡ ମାୟାବୀ ଜୀବ ନୁହେଁ କାହାରି ଦିନେ ନ ଭଜିଲୁ ରାମକୃଷ୍ଣ ଶ୍ରୀହରି-ବଡ ମାୟାବୀ ଜୀବ ନୁହେଁ କାହାରି । ପ୍ରଥମ ମାସରେ ହେଲୁ ଧବଳ ବର୍ଣ୍ଣ, ଦ୍ୱିତୀୟ ମାସରେ ଯଥା ଜଳରେ ମୀନ, ଇତ୍ୟାଦି ଆବୃତ୍ତି କରନ୍ତୁ । ହରିବୋଲ । ମନୁଷ୍ୟ ଜନ୍ମ ପାଇଁ ଈଶ୍ୱରଙ୍କର ଆଶୀର୍ବାଦ ଲୋଡା କାରଣ ମନୁଷ୍ୟ ଦେହେ ଦିବ୍ୟଜ୍ଞାନ-ଦେଖି ସନ୍ତୋଷ ଭଗବାନ । ପଶୁ ଓ ମନୁଷ୍ୟ ମଧ୍ୟରେ ପାର୍ଥକ୍ୟ କ'ଣ ? ପ୍ରାଣୀ ମାନେ ଆହାର ନିଦ୍ରା-ଭୟ-ମୈଥୁନ ଦ୍ୱାରା ପରିଚାଳନ କିନ୍ତୁ ଅନ୍ୟମାନଙ୍କ ଠାରୁ ମନୁଷ୍ୟ ବିଶେଷତ୍ୱ ହେଲା ସେ ତା'ର ସ୍ରଷ୍ଟା ଭଗବାନଙ୍କୁ ଆରାଧନା କରେ । କିନ୍ତୁ ବର୍ତ୍ତମାନ ଅବଶ୍ୟ ନୁହେଁ । ବହୁତ ପୁରୁଣା ଯୁଗରୁ ପ୍ରଚଳିତ ଭଗବାନ ଆମକୁ କ'ଣ ଦେବେ ? ସେଥିପାଇଁ ଆରାଧନା କରେ । ଯାହାଟା ମୁକ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ । ବର୍ତ୍ତମାନ ପୁରୁଷ ନାରୀ ମଧ୍ୟରେ ପ୍ରେମ

ହେଲା କ୍ରିୟାପଦ ଦ୍ୱାରା କର୍ମ । ଭାଗବତ କହୁଛି, ପ୍ରଥମ ରାତ୍ରରେ ବୀର୍ଯ୍ୟକଣା ସ୍ତ୍ରୀର ରଜ ସହିତ ମିଶ୍ରିତ ହୁଏ । କିନ୍ତୁ ଏବେ ସ୍ଥାନ କାଳ-ପାତ୍ର ହିସାବକୁ ନିଆଯାଉ ନାହିଁ । ଯେଉଁଠି ନାହିଁ ସେଠି-ଯେତେବେଳେ ନାହିଁ ସେତେବେଳେ- ଯାହା ଦ୍ୱାରା ନାହିଁ ତାହା ଦ୍ୱାରା ଅବଶ୍ୟ ଏହା ବ୍ୟକ୍ତି ବିଶେଷର ସ୍ୱାଧୀନ କର୍ମ । ପଞ୍ଚମ ରାତ୍ରରେ ବୁଦୁବୁଦୁ ଆକାର ଧାରଣ କରେ-ଦଶମ ଦିନ୍‌ରେ କୋଳି ପରି ଟାଣହୁଏ-ତା ପରେ ଅଣ୍ଡାପରି ହୁଏ । ଅଣ୍ଡାରୁ ମୁଣ୍ଡ-ଦୁଇ ମାସରେ ହାତପାଦ-ତିନି ମାସରେ ନଖ ଲୋମ-ଅସ୍ଥି-ଚର୍ମ-ଲିଙ୍ଗ-ନବଦ୍ୱାର-ଚାରିମାସରେ ମାଂସମେଦ-ଛ'ମାସରେ ଜରାୟୁ କୋଠରୀରେ-ଏହା ଏକ ଜେଲଖାନା-ଅତ୍ୟନ୍ତ ଯନ୍ତ୍ରଣା ପାଏ । ସାତ ମାସରେ ବୋଧଶକ୍ତି ଆସେ । ସେ ଗର୍ଭେ ପୂର୍ବକର୍ମ ବଶେ-ବହୁତ ଜନ୍ମ ତାକୁ ଦିଶେ । ଶତ ଜନ୍ମର କର୍ମ ଯେତେ-ସୁମରୁ ଥାଇ ଗର୍ଭଗତେ । ସେ ପାପ ପୁଣ୍ୟ ଗର୍ଭେ ଥାଇ-ବହୁତ ନିଶ୍ୱାସ ଛାଡଇ । (ଅନୁତାପ ପ୍ରତିଜ୍ଞାକରେ ଆଉ କୁକର୍ମ କରିବା ନାହିଁ କିନ୍ତୁ ଜନ୍ମପରେ ସବୁ ଭୁଲିଯାଏ । ଭଗବାନ କୁହନ୍ତି ବେଇମାନ୍ ।) ସୁମରି ପୂର୍ବଜନ୍ମ ଦୁଃଖ-ସୁଖ ନ ଲଭିସେ ବିମୁଖ । ସପ୍ତ ଧାତୁରେ ବଦ୍ଧହୋଇ- ଅଞ୍ଜଳି କରିଣ ପାର୍ଥଇ । ଗର୍ଭକୁ ଆଣିଲା ଯେ ମୋତେ-ତା ପାଦ ସେବଇ ନିରତେ । ଏହି ସଂସାରେ ଯେତେକର୍ମ ସେ ଅଟେ ବନ୍ଧନ ଆଶ୍ରମ । "ଭଗବତ ଭଜନ ମାଳା, ମନ ସୁତ୍ରେଗୁନ୍ଥୁ ନକରି ହେଳା । ପ୍ରଥମ ଦ୍ୱିତୀୟେ ଆଗମ ଏବାଣୀ, ତୃତୀୟେ ବ୍ରହ୍ମାଣ୍ଡ ସର୍ଜନା ହେଲା । ଚତୁର୍ଥରେ ଧ୍ରୁବ ତପ ଆଚରିଣ, ଅଜପା ମନ୍ତ୍ରକୁ ହୃଦେ ଧଇଲା । ଭାଗବତ ଭଜନମାଳା ।

> "ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ହରେରାମ ହରେରାମ
> ରାମରାମ ହରେହରେ ।"

## ହରିକଥା - ୭

ସ୍ମରଣ କରାଇଦେଉଛି । "ଆଜିଁ ସପତ ଦିନ ଶେଷେ-ତକ୍ଷକ ଆସି ମହାରୋଷେ । ତାର ଶରୀର ବେଗେ ଖାଉ-ଏ ପାପୀ ଜଗତେ ନଥାଉ" । ପରୀକ୍ଷିତଙ୍କୁ ହୋଇଛି ବ୍ରହ୍ମ ଅଭିଶାପ ।ସମୟ ମୋଟ ସାତଦିନ । ଶୁକ ଦେବଙ୍କୁ ଅନୁରୋଧ କରିଛନ୍ତି । ମୃତ୍ୟୁ ପୂର୍ବରୁ କ'ଣ କରିବା ଉଚିତ । ଉତ୍ତରରେ ଶୁକଦେବ ଉପଦେସ ଦେଇଛନ୍ତି," କହ

ଜୀବନ ଯିବା କାଳେ-କିବା ସାଧିବି ମହୀତଳେ। କିବା ଶୁଣିବି କର୍ଣ୍ଣପଥେ ସ୍ମରଣ କି କରିବି ଚିତ୍ତେ। କିବା ବଚନ ଉଚ୍ଚାରିଣ-ଭଜିବି କାହାର ଚରଣ, " ଉତ୍ତର",ମନୁଷ୍ୟ ତାର ଅନ୍ତିମ ସମୟରେ ଆସନ ପ୍ରାଣାୟମର ସାଧନା, କର୍ଣ୍ଣରେ ହରିକଥା, ଉଚ୍ଚାରଣ ଓଁକାର ସ୍ମରଣ କରିବା ନାରାୟଣ।" ପୂର୍ବରୁ କୁହାଯାଏ ପ୍ରଥମ ଓ ଶେଷ ଦିବସର କାର୍ଯ୍ୟାବଳୀ। ମଧ୍ୟ ଭାଗରେ ତୃତୀୟ ସ୍କନ୍ଦଠାରୁ ଆରମ୍ଭ କରାଯାଉଛି ସୃଷ୍ଟି ବର୍ଣ୍ଣନା।ପୂର୍ବରୁ ଭଗବାନ କପିଳ ମାତା ଦେବହୂତିଙ୍କୁ ମାତୃଗର୍ଭସ୍ଥ ଶିଶୁର ଜୀବନ କାହାଣୀ ଜନ୍ମ ପ୍ରକ୍ରିୟା ପର୍ଯ୍ୟନ୍ତ କହିସାରିଛନ୍ତି। ଏହିପରି ଦୁଃଖରେ ଶୈଶବ ଓ ପୌଗଣ୍ଡ ଅବସ୍ଥା ଭୋଗ କରେ। ଶରୀର ଦୁଃଖ ଏ ପ୍ରକାରେ ପାଞ୍ଚ ବରଷ ଭୋଗ କରେ। ବଢ଼ିବା ଦୁଃଖ ଅନୁଭବ-ପୌଗଣ୍ଡକାଳେ ହୁଏ ଭୋଗ। ଯୋଉଁ ଦେହପାଇଁ ସେ କର୍ମଳରେ ଓ ଯାହା ପଛରେ ଗୋଡାଉଥାଏ। ତାହା ଅଜ୍ଞାନ କର୍ମ ବନ୍ଧନର ପଥ ଏବଂ ଘୋର ଦୁଃଖକୁ ଟାଣିନିଏ। ଯାହାଙ୍କ ସଙ୍ଗରେ ମିଶିଲେ ସତ୍ୟ-ଶୌଚ-ଦୟା-ମୌନ-ବୁଦ୍ଧି-ବିବେକ-ଜ୍ଞାନ-ଲଜ୍ୟା-କ୍ଷମା-ଯଶ-ଶାନ୍ତି-ସଂଯମ-ସୌଭାଗ୍ୟ ସବୁ ନଷ୍ଟହୋଇଯାଏ। ଏହା କେବଳ ହେବାର କାରଣ ଅଶାନ୍ତ ଚିତ୍ତ ସ୍ତ୍ରୀଲୋକଙ୍କ ଖେଳନା ସଦୃଶ। ସ୍ତ୍ରୀ ସଙ୍ଗ ବା ସ୍ତ୍ରୀ ସଙ୍ଗରେ ଥିବା ପୁରୁଷମାନଙ୍କ ସଙ୍ଗ କଲେ ଯେଉଁ ମୋହ ଓ ବନ୍ଧନ ହୁଏ। ଅନ୍ୟ ପ୍ରସଙ୍ଗରେ ହୁଏନାହିଁ। କିନ୍ତୁ ସ୍ତ୍ରୀଙ୍କ ମାୟାରେ କିଏ ନପଡିଛି ? ବ୍ରହ୍ମାଙ୍କ ସୃଷ୍ଟିରେ ଆଉ କେଉଁ ପୁରୁଷ ଅଛି, ଯାହାର ବୁଦ୍ଧି ସ୍ତ୍ରୀର ରୂପିଣୀ ମାୟାରେ ମୋହିତ ନହୁଏ ? ନିଜେ ମଧ୍ୟ ବ୍ରହ୍ମା ନିଜର କନ୍ୟାକୁ ଧରି ପକାଇଲା ବେଳେ ସେ ମୃଗୀହୋଇ ଧାଇଁଲା ମାତ୍ର ପରେ ବ୍ରହ୍ମାମୃଗ ହୋଇ ଗୋଡାଇଲେ। ମାୟା ଭଗବାନଙ୍କ ସୃଷ୍ଟି ତାହା ବ୍ରହ୍ମାଙ୍କୁ ବିଚଳିତ କରିପକାଇଲା। "ନରକ ବୋଲିଯାକୁ କହି-ସ୍ତ୍ରୀ ସମ୍ଭୋଗ ସୁଖଏହି।" ଏଭଳି ଘଟଣା ସମୟେ ସମୟେ ଖବର କାଗଜ କହେ। କେବଳ ନାରାୟଣ ଋଷିଙ୍କୁ ବାଦ ଦିଆଯାଏ। ହିଁ, ଆମର ବହୁତ ନେତୃସ୍ଥାନୀୟଙ୍କୁ ଓ ସାଧୁସନ୍ଥଙ୍କୁ ରୋଗ ଧରିପାରେ ନାହିଁ ? କିଏ ଜାଣିଛି, ତାଙ୍କର ପଛ ଦରଜା କଥା ? " ଅଜ୍ଞାନ ହେତୁ ଜୀବ ଜାଣ-ମୁହିଁ ମୋହର କରେ ଜ୍ଞାନ।ସେ କର୍ମ କଲେ ପୁଣି ଜନ୍ମ-ସଂସାରେ ହୁଅଇ ଜାଣିମ। ସେ କର୍ମେ ଅନୁରକ୍ତ ହୁଏ-ଭଲ ମନ୍ଦର ଜ୍ଞାନ ନୁହେଁ।ଏପରି ଈଶ୍ୱର (କପିଳ) କହିଲେ-ନିଜମାତାଙ୍କୁ ବୁଝାଇଲେ। (ତୃତୀୟ ସ୍କନ୍ଦ-୧୩୬ କପିଳ ଦେବହୂତି ଜ୍ଞାନ କଥନେ ନାମ ୩୧ଶ ଅଧ୍ୟାୟ ହରିବୋଲ। ଦୋହା-" ଥାଇ ଗଙ୍ଗାକୂଳେ ପରାଣ ବିକଳେ-ତୃଷାରେ ଯେବେ ହରିବ ପ୍ରାଣ-ଦିନମଣିଥିବ ଅନ୍ଧାର ହୋଇବ-ଏକଥା ପ୍ରଭୁ ମନକୁ ଆଣ।୪। ସୁଦର୍ଶନ ନାମେ ଚକ୍ର ବହିଥିବେ-ଟେକି ବାହୁରେ ଦକ୍ଷିଣ କରେ-କହେ ନିତ୍ୟାନନ୍ଦ ଅପରାଧୀ ମନ୍ଦ-ମୋହର ଶରଣ

ତାଙ୍କ ଠାରେ । (ଆରତ ଧ୍ୱଂସନ) । " ଭୋ ମାତ ଦେଖ ସୁବିଚାରେ ନରକ ସ୍ୱର୍ଗ ଏହିଠାରେ ।" ନରକ ଯାତନା ଏତକ-ସ୍ୱର୍ଗଟି ନାନା ଭୋଗ ସୁଖ" । ମାତା ଗର୍ଭଧାରଣ କରି ପୁତ୍ରକୁ ଜନ୍ମ ଦିଏ, ଅଥଚ ମାତା ଏ ଦୁଃଖ ବିଷୟରେ ଅବଗତ ନୁହେଁ, କିନ୍ତୁ ପୁତ୍ର ସେହିଦୁଃଖ ବିଷୟରେ ଅବଗତ କରାଉଛନ୍ତି । କିନ୍ତୁ ଜନ୍ମିତ ସନ୍ତାନକୁ ଦେଖି ମାଆ ଓ ପରିବାର କେତେ ଆନନ୍ଦିତ ହୁଅନ୍ତି ? ଏକଥା କିଏ ନଜାଣେ ? ଯେ ଜାଣିଛି ଏ ଦୁଃଖ ସେ ପୁଣି ଖାଇଲା ପୁଅ ରଙ୍କ । ଜୀବନ ଗତିକରେ ଚାଲେ, ବିବେକ ମରିଯାଏ, ଶାସ୍ତ୍ର ନିରବ ରହେ । କର୍ମଭୂମିରେ ହୁଙ୍କାପିଟା ଭଳି ମଣିଷ ଗତିକରେ, କିନ୍ତୁ ସର୍ବଶେଷରେ, ଏ ବେନି ସଙ୍ଗତେ ନଯାଇ-ଛାଡିଣ ଏକାନ୍ତେ ଚଳାଇ । ପ୍ରତେଜି ନିଜ କଳେବର-ଏକା ସେ ଗମେ ନିଜପୁର । ଅଧର୍ମ ପ୍ରାଣୀ ହିଂସାକରି-ଯେ ଦେହ ପାଶେ ସେହିଭରି । ଏକା ସେ ନରକ ଭୁଞ୍ଜଇ ଦ୍ୱିତୀୟ ସଙ୍ଗତେ ନଯାଇ । କୁଟୁମ୍ବ ପ୍ରପୋଷଣ ଫଳ-ତାହାକୁ ଯେତେକ ସମ୍ବଳ । ସେ ପାପ ଈଶ୍ୱର ଦିଅନ୍ତି ପାପୀ ତା ଏକାନ୍ତେ ଭୁଞ୍ଜନ୍ତି" । ଏହିକଥା ପୁତ୍ର କପିଳ ମାତା ଭବହୁତିଙ୍କ ଅବଗତି ପାଇଁ ବ୍ୟାଖ୍ୟା କରିଛନ୍ତି ।" ତେବେ ସ୍ୱର୍ଗ କ'ଣ ? ଯାହାକୁ ବିବେକ ଅନୁ ମୋଦନ କରେ, ଓ ଶାସ୍ତ୍ର ମଧ ଏକମତ ହୁଏ ଯେଉଁ କର୍ମ କରିବାକୁ, ତାହାହିଁ ସ୍ୱର୍ଗ ପ୍ରାପ୍ତିର ପଥ । ଭଗବାନ ବୁଦ୍ଧଦେବ କହନ୍ତି । କୌଣସି ଉପଦେଶ ଓ ବାଣୀରେ ହଠାତ୍ ବିଶ୍ୱାସ କରନାହିଁ । ଯଦି କେହି କହନ୍ତି ଏଗୁଡିକ ପବିତ୍ର ଗ୍ରନ୍ଥରେ ଲିପିବଦ୍ଧ ହୋଇଛି । ତଥାପି ବିଶ୍ୱାସ କରନାହିଁ । ଯଦି କେହି କହନ୍ତି ଏହା ମହାପୁରୁଷଙ୍କ ବାଣୀ ନିରବ ରୁହ । ଯେଉଁ ସିଦ୍ଧାନ୍ତ ତୁମେ ସ୍ୱୟଂ କଷଟି ପଥରେ କଷି ପରୀକ୍ଷା କରି ପାରିବ ଏବଂ ଯାହାକୁ ତୁମର ତର୍କ, ବୁଦ୍ଧି ଓ ବିବେକ ସ୍ୱୀକାର କରୁଥିବ ଏବଂ ଯାହାକୁ ବୁଦ୍ଧିମାନ ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟକ୍ତି ପଥ ପ୍ରଦର୍ଶନ କରିଥିବେ । ଲୋକେ ସେହି ପଥକୁ ଗ୍ରହଣ କରି ଲାଭାନ୍ୱିତ ହୋଇଥିବେ ବୋଲି ଜାଣିଛ ତେବେ ସେହି ଉପଦେଶ ସିଦ୍ଧାନ୍ତ-ତତ୍ତ୍ୱ-ପଥହିଁ ସ୍ୱର୍ଗର ପଥ ଅର୍ଥାତ୍ ସୁଖ ବିପରୀତ ଦିଗଟି ଦୁଃଖ । " ସେ ପ୍ରଭୁ ପରମ ଈଶ୍ୱର-ତ୍ରିକାଳ ଜ୍ଞାନ ଦେଲେ ଆର । ଆଧାତ୍ମା ଆଦି ତାପମାନ-ବିନାଶେ ତାହାଙ୍କ ଭଜନ । ସେ ପ୍ରଭୁ ମାତାର ଉଦରେ ବୁଡି ରହିଛି ବିସ୍ମୃତିରେ" । ମହାମୁନି ଶୁକଦେବ ପରୀକ୍ଷିତକୁ କହିଥିଲେ, ମୃତ୍ୟୁ ପୂର୍ବରୁ ହରିକଥା ଶୁଣିବା ଓ ଭଜନ କରିବା ଆବଶ୍ୟକ ଅତଏବ ବର୍ତ୍ତମାନ ହରିଙ୍କ କଥା ପରୀକ୍ଷିତ ଶୁଣିଛନ୍ତି, ତାହାହିଁ ମୁକ୍ତିର ମାର୍ଗ । ଦୋହା- " ଟକାନୟନକୁ ପତିତ କହି-ଡକଇେ ଖର ନିଶ୍ୱାସ ପକାଇ-ଡକା ପକାଇ ଗରୁଡ ପଛରେ-ବକାରି ମୋ ଆର୍ତ୍ତଶୁଣ ସତ୍ତ୍ୱରେ ହେ, ଡକା ବାଜୁଛି ମହିମା ହେ, ଠକାର କରି କର୍ଣ୍ଣେ ଗିର ନ ଶୁଣ, କାହିଁକି

ବିଚିତ୍ର କର୍ମା ହେ, ଚନ୍ଦନ ହଜୁରୀ ଭଜେ ହେ।" ହରିବୋଲ। ଏହାପରେ ଭଗବାନ କପିଳ ମାତା ଭବହୂତିଙ୍କ ମୁକ୍ତିପଥ ବିଷୟରେ ସମ୍ୟକ ଜ୍ଞାନ ପ୍ରଦାନ କରିଛନ୍ତି(୩/୩୨/୧୩)। ବର୍ତ୍ତମାନ ଭଗବାନ କପିଳ ମାତା ଭବହୂତିଙ୍କୁ ମନୁଷ୍ୟ କାହିଁକି ଦୁଃଖ ପାଏ ବା ନର୍କ ଗତି କରେ। ଅଥବା ପାପ ପଙ୍କରେ ଘୋଷାଡି ହୁଏ, ସେହି କଥାହିଁ କହୁଛନ୍ତି। " ଅଧର୍ମେ ପ୍ରାଣୀ ହିଂସା କରି-ଯେ ଦେହ ପାଶେ ସେହିଭଳି। ସେ ଦେହ ସ୍ନେହ ତେଜି ଯାଇଁ-ପାପୀଙ୍କ ପୃଷ୍ଠରେ ବସାଇ। ଏକା ସେ ନରକ ଭୁଞ୍ଜଇ-ଦ୍ୱିତୀୟେ ସଙ୍ଗତେ ନଯାଇ। କୁଟୁମ୍ବ ପ୍ରପୋଷଣ ଫଳ-ଯାହାକୁ ଯେତେକ ସମ୍ବଳ। ସେ ପାପ ଈଶ୍ୱର ଦିଅନ୍ତି-ପାପୀ,ତା ଏକାନ୍ତେ ଭୁଞ୍ଜନ୍ତି।"ମନୁଷ୍ୟ ଅନ୍ୟକୁ ଭଲ ପାଇବା ସ୍ନେହ କରିବା-ମମତା ଡୋରିରେ ବାନ୍ଧି ରଖିବା ଇତ୍ୟାଦି ସ୍ୱର୍ଗୀୟଗୁଣ। ଏହି ସ୍ୱର୍ଗୀୟ ଗୁଣ ହେତୁ ଏପରିକି ବିରାଡି ମାଙ୍କଡ, ସାପ-ମୂଷା, ବାଘ-ମୃଗଙ୍କ ମଧ୍ୟରେ ବନ୍ଧୁତା ଦେଖାଯାଏ। କିନ୍ତୁ ମନୁଷ୍ୟ ମନୁଷ୍ୟ ମଧ୍ୟରେ ସ୍ନେହ ଦ୍ୱାରା ଆବଦ୍ଧ ନହୋଇ ସ୍ୱାର୍ଥଦ୍ୱାରା ଆବଦ୍ଧ ହୋଇଥାନ୍ତି। ମନୁଷ୍ୟ ଶାକାହାରୀ କିନ୍ତୁ ଛେଳି-ମେଣ୍ଢା, ପକ୍ଷୀଙ୍କୁ ଖାଦ୍ୟ ହିସାବରେ ଅର୍ଥାତ୍ ନିଜର ସ୍ୱାର୍ଥସିଦ୍ଧି ପାଇଁ ହତ୍ୟାକରେ। ଏହାର ଫଳାପଳ ମୃତ୍ୟୁ ପରେ ସଙ୍ଗରେ ନଯାଇଁ ଏହିଠାରେ ଭୋଗ କରେ। ଅର୍ଥାତ " ଭୋ ମାତ ଦେଖ ସୁବିଚାରେ-ନରକ ସ୍ୱର୍ଗ ଏହିଠାରେ। ନରକ ଯାତନା ଏତକ ସ୍ୱର୍ଗଟି ନାନା ଭୋଗ ସୁଖ" ଅର୍ଥାତ୍ ଯେ ଦୁଃଖ ପାଏ, ସେହି ହିଁ,ଯେ ସୁଖପାଏ ସେହି ହିଁ ସୁଖ। ତେବେ ଦୁଃଖ ସୁଖ କ'ଣ ? କେହି ସୁଖରେ ନାହାନ୍ତି। କାରଣ ସଂସାରଟା ଦୁଃଖପୂର୍ଣ୍ଣ। ଲୁଣିଜଳ ସମୁଦ୍ରରେ ମିଠାପାଣି କ'ଣ ମିଳେ ? ହିଂସା ଆଚରଣ କରୁଥିବା ବ୍ୟକ୍ତି ନର୍କ ଜୀବନ ଯାପନ କରେ । ପଶୁହତ୍ୟା ଓ ତା'ର ଫଳାଫଳ କ'ଣ ? " ଜୀବ ହତ୍ୟାର ଦୋଷ ଯାହା ତୋ ଆଗେ କହୁଅଛି ତାହା। ଆଠ ଜଣଙ୍କୁ ଲାଗେ ଦୋଷ-ମନୁଙ୍କ ବିଧାନ ବିଶେଷ। ଆଦେଶ ଦିଏ ଯେଉଁଜନ ଦ୍ୱିତୀୟେ ଯେ ବଧେ ତା ପ୍ରାଣ। ତୃତୀୟେ ମାଂସଯେ ,କାଟଇ-ଚତୁର୍ଥେ ଯେ ମାଂସ ବିକଇ। ପଥଁମେ କିଣଇ ଯେ ଜନ-ଷଷ୍ଠରେ ଯେ କରେ ରନ୍ଧନ। ସପ୍ତମେ ପରଶେ ଯେ ଜନ-ଅଷ୍ଟମେ ଯେ କରେ ଭକ୍ଷଣ। ଏ ଆଠଜଣଙ୍କୁ ରାଜନ-ଦୋଷୀ ହୁଅନ୍ତି ଏ ପ୍ରମାଣ। ଏ ଆଠ ଜଣଙ୍କର ପାଇଁ ସେ ପ୍ରଣୀ ମରଣ ଲଭଇ। ସେ ମୃତ ଦେହୁ ଜୀବଯାଏ ହନ୍ତାର ଘରେ ଜନ୍ମ ନିଏ। ଏହା ସ୍ୱର୍ଗୀୟ ଜୀବନ ଯାପନ ପଦ୍ଧତି ନୁହେଁ। ଏଥିରୁ ସହଜରେ ଅନୁଭବ ହୁଏ ଯେ ଯେକୌଣସି ପ୍ରକାରର ଉଦ୍ଦେଶ୍ୟ ମୂଳକ ବଧ ବା ହତ୍ୟା ହିଁ ପାପ ବା ନର୍କ। ମନୁଷ୍ୟ ଏହି ପଥକୁ ନିବୃତ୍ତ

ହେଲେ ସୁଖ ଲାଭକରେ । ପ୍ରତ୍ୟେକ ମନୁଷ୍ୟ ପାଞ୍ଚଗୋଟି ଦୁଃଖ ଭୋଗ କରେ । ସୁଖ କାହିଁ ? ୧-ମାତା ଗର୍ଭରେ ଥିବା ବେଳେ ଯେଉଁ ଯାତନା ତାକୁ ମିଳେ । ମୁଖକେ ତା ପାରିବ କହି-ଯେପରି ଯନ୍ତ୍ରଣା ଭୁଞ୍ଜଇ । ୨-ଦ୍ୱିତୀୟ ଭୟଙ୍କର ଦୁଃଖ-ଜନ୍ମ ସମୟେ ନାହିଁ ସୁଖ । ୩-ତୃତୀୟ ଦୁଃଖ ଏବେ ଶୁଣ-ଶରୀର ପାଳେ ଏକଧର୍ମ । ତା ଧର୍ମ ନଛାଡଇ ଦେହ ରୋଗାଡି ଆସିବ ନିଶ୍ଚୟ । ୪-ଚତୁର୍ଥ ଦୁଃଖ ଏବେ ଶୁଣ ବୃଦ୍ଧ ସମୟ ଆସେ ପୁଣ । ଅଙ୍ଗରୁ ଗଳିଯାଏ ରସ-ଶୁକ୍ଳ ବର୍ଣ୍ଣ ଯେ ଧରେ କେଶ । ସେ ହୋଇଯାଏ ଦନ୍ତଶୂନ୍ୟ ଖାଦ୍ୟତା ନହୁଏ ଚର୍ବଣ । ଶରୀର ହୁଏ ଜରାଜୀର୍ଣ୍ଣ, ଚଞ୍ଚଳ ରହିଥାଏ ମନ । ନପାରେ ଶୁଣି ତା କାନରେ-ଦେଖି ତା ନପାରେ ନେତ୍ରରେ । ୫-ଦେହରୁ ହୁଏ କଫଜାତ-ମହାବ୍ୟାଧିରେ ପରିଣତ । ତଣ୍ଟିରୁ ଶୁଭେ ଘଡଘଡି-ପିଣ୍ଡରୁ ପ୍ରାଣ ଯାଏ ଛାଡି । ଏ ପଞ୍ଚମହାଦୁଃଖ ଅଟେ ସମସ୍ତ ପ୍ରାଣୀ ଦେହ ଘଟେ । ପ୍ରାରବ୍ଧ ରୂପେ ହୁଏ ଠୁଳ-ପରଜନ୍ମରେ ହୁଏ ମୂଳ" । ଏଠାରେ ହରି ନାହାନ୍ତି । ଯେଉଁଠରେ ହରି ଅଛନ୍ତି, ସେଠାରେ ସ୍ୱର୍ଗ ଅଛି ଓ ସୁଖ ଅଛି, କେଉଁଠି ? ସାବଧାନ ତକ୍ଷକ ଆସିବ-ଅବଶ୍ୟ ଯମରାଜା ପିଆଦା ପଠାଇବ । ଦୋହା- " ଆହେନୀଳ ଶଇଳ ପ୍ରବଳମତ ବାରଣ-ମୋ ଆରତ ନଳିନୀ ବନକୁ କର ଦଳନ । ଆହେନୀଳ ଶଇଳ........ । ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ-ଚକ୍ରପେଶି ନକ୍ରନାଶି ଉଦ୍ଧରିଲ ଆପଣ । ଆହେନୀଳ ଶଇଳ....... । କହେ ସାଲବେଗ ହୀନ ଜାତିରେ ମୁଁ ଯବନ-ଶ୍ରୀରଙ୍ଗା ଚରଣ ତଳେ କରୁଅଛି ଜଣାଣ । ଆହେ ନୀଳ......ହରିବୋଲ ଜୀବନ କାଳ ମଧରେ କିଏ କେତେ ପାପକରେ, ପୁଣି କିଏ କେତେ ପୁଣ୍ୟ କରେ । ତାର କିଛି ହିସାବ ଥାଏ କି ? ମଣିଷ ଚୋରୀ କରିବାକୁ ପରସମ୍ପତ୍ତି, ନାରୀ ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ, ହତ୍ୟା କରିବାକୁ ପସନ୍ଦ କରେ । କିନ୍ତୁ ଏସବୁ ଲୁକ୍କାୟିତ ଭାବ । ଦେଖନ୍ତୁ, ଅନେକ ଅନେକ ଦୁର୍ଘଟଣା ଘଟାଇଥିବା ଲୋକ ଆତ୍ମଗୋପନ କରେ ଏବଂ କେବଳ ପୋଲିସ୍ ତାହା ଜାଣିପାରେ । ବିଚାରାଳୟରେ ବିଚାରପତିଙ୍କ ଦ୍ୱାରା ଦଣ୍ଡିତ ହୁଏ, ସେତେବେଳେକୁ ସମସ୍ତ କଥା ସ୍ୱୀକାର ନକରିବାର ଉଦ୍ଦେଶ୍ୟ କ'ଣ ? " ପ୍ରାଣୀର ପାପ ପୁଣ୍ୟ କଥା ଅନ୍ତିମେ ଜଣାଯାଏ ଯଥା । ଇହ ଜନ୍ମର ସମିଶ୍ରଣ-ପ୍ରାରବ୍ଧ ସଙ୍ଗେ ଭୁଞ୍ଜେପୁଣ । କ୍ରିୟମାଣିୟ ରହେ ଯାହା-ସଂଚିତ ହୁଏ କ୍ରମେ ତାହା । ଇହ ଜନ୍ମରେ ଭୁଞ୍ଜେ ପ୍ରାଣୀ-ଅନ୍ତିମେ ରହେ ଯାହା ପୁଣି ପ୍ରାରବ୍ଧରୂପେ ହୁଏଠୁଳ-ପରଜନ୍ମରେ ହୁଏ ମୂଳ" । ଅର୍ଥାତ୍ ପ୍ରତ୍ୟେକ ଦିନରେ ଯାହା କରେ ତାର ମୂଲ୍ୟ ପୂର୍ବଦିନ କର୍ମର ମୂଲ୍ୟ ସହିତ ମିଶି ଆଗାମୀ

କାଲିର ମୂଳହୁଏ । ଏହିଭଳି ଜୀବନର ଦୈନନ୍ଦିନ କର୍ମ ଓ ଫଳାଫଳ ସହ ଏକ ଲମ୍ବା ତାଲିକା ଥାଏ । ମୃତ୍ୟୁ ପର୍ଯ୍ୟନ୍ତ ଯାହା ଭୋଗକରେ, ଅବଶିଷ୍ଟ ଆଗାମି ଜନ୍ମର ମୂଳହୁଏ । ତାହାହିଁ ପ୍ରାରବ୍ଧ । କର୍ମ କ'ଣ ? "ଶ୍ରୀ କୃଷ୍ଣ କହିଲେ ଅର୍ଜୁନ-କାମନାଶୂନ୍ୟ କରି କର୍ମ । ଇହ ଜନ୍ମରେ ସୁଖ ପ୍ରାପ୍ତି-ଅବଶ୍ୟ ଲଭେ ମୋକ୍ଷ ଗତି ।" ତେଣୁ ମୁମୂର୍ଷୁ ବ୍ୟକ୍ତି ମୃତ୍ୟୁକୁ ଭୟ ନକରି ମୋହ ମାୟା ଆଦି ପରିତ୍ୟାଗ ପୂର୍ବକ ଅନାସକ୍ତ ଭାବରେ ସଂସାରରେ ବିଚରଣ କରିବା ଉଚିତ । ସ୍ୱର୍ଗ ନରକ ବେନି ବାଣୀ-ଏ ଏକ ଅବସ୍ଥାରେ ଗଣି । ସ୍ୱର୍ଗ ବୋଲିଣ ଏକସ୍ଥାନ ଏଠାରେ ଅଛି ବିଦ୍ୟାମାନ । ତାହାହିଁ ହେଲା, ତୁଟିଲେ କାମନା ବାସନା-ନମିଳେ ଦୁଃଖର ଯାତନା । ତେଣୁ ସେ ଲଭଇ ମୁକତି-କୈବଲ୍ୟ ଏହାକୁ କହନ୍ତି ।" ଏହାହିଁ ସ୍ୱର୍ଗ । ତେବେ ନର୍କକୁଣ୍ଡ ଏହି-ଏ ଜନ୍ମେ ଦୁଃଖ ଅଟେ ସେହି । ଯଦ୍ୟପି ନର୍କକୁଣ୍ଡ ଅଛି ଏ ଦୁଃଖ କାହିଁକି ଭୁଞ୍ଜୁଛି । ଦୁଃଖଟି ନର୍କବୋଲି ଜାଣି-ଏକଥା ଅଟଇ ପ୍ରମାଣ । " ଜୀବ ଚାଲିଗଲେ ଦେହୁ-ପୁଣି ଜନମ ହୁଏ ସ୍ନେହୁ,ଜନ୍ମ ମରଣ-ମୃତ୍ୟୁ-ଜରା-ଉଭୟ ଦୁଃଖ ସୁଖ ପରା ।" ହରିବୋଲ ।

ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ହରେରାମ ହରେରାମ ହରେରାମ ହରେହରେ ।

## ହରିକଥା - ୮

ମାତା ଦେବହୂତିଙ୍କର ଏକ ପ୍ରଶ୍ନ, "ସର୍ବ ଶେଷ୍ଠ କିଏ ? ଏହାର ଉତ୍ତର ଭଗବାନ କପିଳ ଏହିପରି ଦେଇଛନ୍ତି । ଜଗତରେ ଯାହା କିଛି ଦେଖୁ ତାହାର ସୃଷ୍ଟି କିପରି ହେଲା ? ସେମାନେ ସାଧାରଣତଃ ଜରାୟୁଜ-ଅଣ୍ଡଜ-ସ୍ୱେଦଜ-ବୃକ୍ଷଜ-ଜଳଜ ଇତ୍ୟାଦି । ଏମାନଙ୍କ ମଧରେ ସର୍ବଶେଷ୍ଟ-ସର୍ବନିକୃଷ୍ଟ କେଉଁମାନେ ? ଆଜିକାଲି ପିଲା ପରିକ୍ଷା ଦେଉଛନ୍ତି । ତାଙ୍କ ଭିତରେ ସର୍ବଶେଷ୍ଠ ଓ ସର୍ବ ନିକୃଷ୍ଟ ବାହାର କରାଯାଉଛି । ଯେ ସମସ୍ତ ବିଷୟରେ ପୂର୍ଣ୍ଣସଂଖ୍ୟା ହାସଲ କରେ ସେହି ହେଉଛି ସବଶେଷ୍ଠ ଓ ସମସ୍ତ ବିଷୟରେ ମୋଟ ମିଶ୍ରଫଳ ଶୂନ୍ୟ, ତାକୁ କ'ଣ କହିବା ସର୍ବ ନିକୃଷ୍ଟ । କିନ୍ତୁ ସଚରାଚର ଦୁନିଆରେ ସର୍ବଶେଷ୍ଟ କିଏ ? ଅତଏବ ସର୍ବ ନିକୃଷ୍ଟ ଠାରୁ ଉର୍ଦ୍ଧ୍ୱକୁ ଯିବାକୁ ଭଗବାନ କପିଳ ମାତାଙ୍କ ଏକ ଗାଣିତିକ ସୂତ୍ର ଉପାୟରେ ବୁଝାଇଛନ୍ତି । ଶ୍ରେଷ୍ଠତ୍ୱ ବିଚାର-ଅଜୀବ ମଧ୍ୟଜୀବ ଶ୍ରେଷ୍ଠ ପାଷାଣ ଆଦି ଅଚେତନ ପଦାର୍ଥଙ୍କ ଅପେକ୍ଷା ଜୀବନ

ଥିବା ଯଥା-ବୃକ୍ଷାଦି ଶ୍ରେଷ୍ଠ। ଜୀବନରେ ପ୍ରାଣ ଯେ ଗରିଷ୍ଠ। ୨-ସେମାନଙ୍କ ଅପେକ୍ଷା ନିଶ୍ୱାସ-ପ୍ରଶ୍ୱାସ ଜୀବଶ୍ରେଷ୍ଠ। ୩-ଏମାନଙ୍କ ମଧ୍ୟରେ ଚିତ୍ତଥିବା ପ୍ରାଣୀ ଶ୍ରେଷ୍ଠ। ୪-ଏମାନଙ୍କ ମଧ୍ୟରେ ଇନ୍ଦ୍ରିୟ ଚାଳିତ ଜୀବ ଶ୍ରେଷ୍ଠ। ୫-ସେମାନଙ୍କ ମଧ୍ୟରେ ସ୍ପର୍ଶକୁ ଯେ ଗ୍ରହଣ କରୁଥିବା ପ୍ରାଣୀ(ମାଛ) ଶ୍ରେଷ୍ଠ। ୬-ସେମାନଙ୍କ ମଧ୍ୟରୁ ଗନ୍ଧ(ଭ୍ରମର) ଅନୁଭବ କରୁଥିବା ପ୍ରାଣୀ ଶ୍ରେଷ୍ଠ। ୭-ଏମାନଙ୍କ ଅପେକ୍ଷା ଶବ୍ଦଗ୍ରାହୀ (ସର୍ପ) ଶ୍ରେଷ୍ଠ। ୮-ରଙ୍ଗଭେଦ ଜାଣେ(କାକ) ଶ୍ରେଷ୍ଠ ଏମାନଙ୍କ ଅପେକ୍ଷା ଉପର ତଳ ମାଢ଼ିରେ ଦାନ୍ତଥିବା ଜୀବ ଶ୍ରେଷ୍ଠ। ୯-ଏମାନଙ୍କ ମଧ୍ୟରେ ପାଦ ନଥିବା ଅପେକ୍ଷା ବହୁପାଦ ଜୀବ ଶ୍ରେଷ୍ଠ।୧୦-ବହୁ ପାଦଙ୍କ ଠାରୁ ଚତୁଷ୍ପାଦ ଶ୍ରେଷ୍ଠ(ପଶୁ)।୧୧-ଚତୁଷ୍ପାଦ ଅପେକ୍ଷା ଦୁଇପାଦ(ମନୁଷ୍ୟ) ଶ୍ରେଷ୍ଠ। ୧୨-ମନୁଷ୍ୟ ମାନଙ୍କ ଭିତରେ ଚାରିବର୍ଣ୍ଣ ଶ୍ରେଷ୍ଠ (ବ୍ରାହ୍ମଣ-କ୍ଷତ୍ରିୟ-ଶୁଦ୍ର-ବୈଶ୍ୟ)।୧୩-ଚାରିବର୍ଣ୍ଣ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ। ୧୪-ବ୍ରାହ୍ମଣ ମାନଙ୍କ ମଧ୍ୟରେ ବେଦଜ୍ଞ ଶ୍ରେଷ୍ଠ। ୧୫-ବେଦଜ୍ଞଙ୍କ ଠାରୁ ବେଦର ଅର୍ଥ ଜାଣିଥିବ । ଶ୍ରେଷ୍ଠ। ୧୬-ଅର୍ଥଜ୍ଞ ବ୍ରାହ୍ମଣଙ୍କ ଠାରୁ ସଂଶୟ ନିବାରଣ କରିପାରୁଥିବା ବ୍ୟକ୍ତି ଶେ୍ୟଷ୍ଠ। ୧୭-ତାଙ୍କ ଠାରୁ ବର୍ଣ୍ଣାଶ୍ରମ କାମ କରୁଥିବା ବ୍ୟକ୍ତି ଶ୍ରେଷ୍ଠ।୧୮-ଏହାଙ୍କ ଅପେକ୍ଷା ସମସ୍ତ ଆସକ୍ତିକୁ ତ୍ୟାଗ କରି ନିଷ୍କାମ ଭାବରେ ସ୍ୱଧର୍ମ ପାଳନ କରୁଥିବା ବ୍ୟକ୍ତି ଶ୍ରେଷ୍ଠ। ୧୯-ତା'ଠାରୁ ଯେ ତାର ସମସ୍ତ କର୍ମ, କର୍ମଫଳ ଓ ଦେହକୁ ମୋ ଠାରୁ ଅର୍ପଣ କରିଥାଏ (ଭଗବାନଙ୍କ ଠାରେ) ସେହିପରି ନିଷ୍କାମ ସମଦର୍ଶୀବ୍ୟକ୍ତିଠାରୁ ଅଧିକ ଶ୍ରେଷ୍ଠତର କିଏ ? ୨୦ ସମସ୍ତଙ୍କ ମଧ୍ୟରେ ଯେଉଁ ଜୀବାତ୍ମା ବିଦ୍ୟମାନ, ସେ ଈଶ୍ୱର-ସେହିଁ ଭଗବାନ। ସେହି ହିଁ ସର୍ବଶ୍ରେଷ୍ଠ। ପୁରୁଷୋତ୍ତମ। ଅଦ୍ଭୁତକର୍ମା ଓ ଦୈବରୂପରେ ଜଣାଶୁଣା। "ଆନନ୍ଦେ ଦର୍ଶନ ଦିଅନ୍ତି-ମୋକ୍ଷପଦର ଅଧିପତି। ଭକ୍ତିଯୋଗରେ ମୋତେ ଧ୍ୟାୟୀ-ସେ ମୋତେ ହୃଦରେ ଦେଖଇ। ପରମ ବ୍ରହ୍ମକୁ ଲଭଇ ଏଣୁ ଏକା ଗ୍ରେଭାବେଧ୍ୟାୟି। ଏ ଯେ ପରମ ବ୍ରହ୍ମସାର-ପ୍ରଧାନ ପୁରୁଷଙ୍କ ଘର । ତା'ର ଉପରେ କେହି ନାହିଁ-ସୃଷ୍ଟିର ଆଦିଅନ୍ତି ସେହି। ହରିବୋଲ।" ମୋତେ ସେହିରୂପ ଦେଖାଅ ହରି। ମୋତ ସେହିରୂପ ଦେଖାଅ ହରି। ଭଗବାନ କପିଳ ମାତା ଭବହୂତିଙ୍କୁ ଏ ଦୁନିଆରେ ସର୍ବଶ୍ରେଷ୍ଠ ସ୍ଥାନରେ କିଏ ଅଧିଷ୍ଠିତ, ତାଙ୍କୁ କହିଲେ। ପରୀକ୍ଷିତ, ମୃତ୍ୟୁ ପୂର୍ବରୁ କ'ଣ ଶୁଣିବାକୁ ହୁଏ, ହରିକଥା ବୋଲି ଶୁକଦେବଙ୍କର ଉତ୍ତର। ଭଗବାନ କପିଳଙ୍କ ଠାରୁ ମାତା ଦେବହୂତି ସମସ୍ତ ଘଟଣା ଶୁଣି ଆଶ୍ଚର୍ଯ୍ୟ ହେଲେ ଓ ପ୍ରକାଶ

କଲେ, ଏ ବିଶ୍ୱ ଯାହାର ଉଦରେ ମୁଁ ତାକୁ କେମନ୍ତେ ଜଠରେ । ଧଇଲି ବୁଝିନ ପାରଇ-କେବଳ ମାୟା ତୋ ଗୋସାଇଁ ।ତୁ ଦୁଷ୍ଟ ନିବାରଣ ପାଇଁ-ତୁ ସାଧୁ ରକ୍ଷଣେ ଗୋସାଇଁ । ଏଣୁ ତୁମର କଳେବର-ଅନ୍ୟଥା କି କାର୍ଯ୍ୟ ତୁମ୍ଭର । "ପରିତ୍ରାଣାୟ ସାଧୁନାମ୍ ବିନାଶାୟଚଃ ଦୁଷ୍କୃତମ୍-ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"ମାତା ଦେବହୂତି ଖାଲି ଆଶ୍ଚାର୍ଯ୍ୟ ହୋଇନାହାନ୍ତି । ଦେଖିଛନ୍ତି ବିଶ୍ୱରୂପ ଯଶୋଦା ବି ଦେଖିଛନ୍ତି, ଅର୍ଜୁନ ବି ଦେଖିଛନ୍ତି । ଦିବ୍ୟଦୃଷ୍ଟି । ପୁତ୍ର କପିଳ କଥାଶୁଣି ପିତା କର୍ଦମ ଋଷି ଓ ମାତା ଦେବହୂତି କ'ଣ ଭାବିଲେ । ଆଶ୍ଚର୍ଯ୍ୟ, ମୁଁ କିପରି ଜଠରେ ଏ ବଶ୍ୱରୂପର ଶରୀରକୁ ଧାରଣ କରି । ଗୋଟିଏ ବରଫଳ ଭିତରେ ହଜାର ହଜାର ମଞ୍ଜିଥାଏ । ପୁଣି ଗୋଟିଏ ବରଗଛରେ ଲକ୍ଷଲକ୍ଷ ଫଳଥାଏ । ପାଚିଗଲେ ସବୁ ଝଡିପଡେ । ଅଙ୍କୁରୋଦ୍‌ଗମ୍ ପାଇଁ ଯାହା ଯାହା ଉପାଦାନ ଆବଶ୍ୟକ, ପ୍ରତ୍ୟେକ ଫଳ ଓ ଭିତରେ ଥିବା ମଞ୍ଜିଯାଏ, ଯଦି ସବୁ ଗୁଡିକ ଗଛ ହେଉଥା'ନ୍ତା ତେବେ ତାହାର ସଂଖ୍ୟା କେତେ ହୁଅନ୍ତା ? କିନ୍ତୁ କାହିଁ ? କାରଣ କ'ଣ ? ଏହାର ଉତ୍ତର ମଧ ସମ୍ଭବ ନୁହେଁ । ଯାହା ଶୁଣିଛି କହୁଛି, କେବଳ କାଉର ପାକସ୍ଥଳୀରେ ଉପଯୁକ୍ତ ଉତ୍ତାପ ପାଇ ମଳଦ୍ୱାର ପରିତ୍ୟକ୍ତ ସ୍ଥାନରେ ମଳତ୍ୟାଗ ଦ୍ୱାରା କାଁ-ଭାଁ ଗଛଟିଏ ହୁଏ । ସେହିଭଳି ଦେବହୂତିଙ୍କ ଗର୍ଭରୁ କପିଳ ମୁନିଙ୍କ ଜନ୍ମ ଆଶ୍ଚର୍ଯ୍ୟ ଜନକ ହୋଇପାରେ, ପଙ୍କରୁ ପଦ୍ମର ଜାତ ଯେପରି, ସେପରି । କିନ୍ତୁ ଦେବହୂତି ନିଜକୁ ନିଜର ଅତୀତ ଜନ୍ମର ସୁଫଳ ପାଇଁ ଯେ ଯାହା ସେ ନିଜେ ଜାଣିନଥିଲେ । ଅର୍ଜୁନ ମଧ ଭଗବାନ ଶ୍ରୀକୃଷ୍ଣଙ୍କୁ ପୂର୍ବରୁ ବୁଝିପାରି ନଥିଲେ । ଏ ଶରୀରର ଆବଶ୍ୟକତା କ'ଣ ପାଇଁ, କେବଳ ଜ୍ଞାନପାଇଁ । ମାତା ଏକଥା ବୁଝିପାରି କପିଳଙ୍କୁ ବନ୍ଦନା କଲେ । ତୁମ୍ଭେ କାଳାଦି ରୂପଧରି-ଧର୍ମ ସ୍ଥାପିଲ ଦୁଷ୍ଟମାରି । ଏବେ ଏ ଶରୀରେ ଗୋସାଇଁ-ଏ ଭାବ ଜ୍ଞାନ ଦେହପାଇଁ । ଏଣୁ କୃତାର୍ଥ ମୋତେ କଲ-ପୁତ୍ର ସ୍ୱରୂପେ ପ୍ରକାଶିଲ । ଯା ନାମ ଶ୍ରବଣ କୀର୍ତ୍ତନ ଅଥବା କଲେ ସଂକୀର୍ତ୍ତନ । ଯା ପାଦେ କରି ନମସ୍କାର ସ୍ମରଣ କରି ନାମ ଯାର । ସେ ହରି କିପରି ? ପାଦ ନଥାଇ ସେହୁ ଚାଲେ-ଆଖି ନଥାଇ ଦେଖେ ଡୋଳେ । ହାତ ନଥାଇ କାମ କରେ ସେଥାଏ ଭିତରେ ବାହାରେ । କର୍ଣ୍ଣ ନଥାଇ ଶୁଣେ ଡାକ ସେ ପ୍ରଭୁ ଏମନ୍ତେ ସ୍ୱରୂପ । ସହସ୍ରଶୀର୍ଷେ ସହସ୍ରାକ୍ଷ ସହସ୍ର ପାଦେ ଉଭାଦେଖ । ସମସ୍ତ ଘଟେତାର ବାସ-ସମସ୍ତ ସ୍ଥାନେ ସେ ପ୍ରକାଶ । ସହସ୍ର ଦୃଷ୍ଟିରେ ସେ ଦେଖେ-ସହସ୍ର ମୁଖେ ସେହୁ ଭାଷେ । ତାହାର ନାହିଁ ଆଦି ଅନ୍ତ-ତେଣୁ ସେ

ବୋଲାଏ ଅନନ୍ତ । ତାହାକୁ ଯେ ପାରିଲା ଜାଣି ପାଇଲା ଖୋଜୁଥିବା ମଣି । ହରିବୋଲ । ଦେବହୂତିଙ୍କ ଗର୍ଭରେ ସ୍ଥାନ ପାଇଥିଲେ, ଭଗବାନ କପିଳମୁନି ଏଭଳି ମାଆ ସଂସାରରେ ବିରଳ । ବୈରାଗ୍ୟ ଭାବ ଆସିଲା ଗୃହତ୍ୟାଗୀ ହେଲେ । ଏମନ୍ତେ ତପସ୍ୱିନୀ ବେଶ-ସେ ଦେବହୂତି ହୋଇ ତୋଷ । ଗୃହ ସମ୍ପଦ ଦୂରକରି ତପସ୍ୱୀ ବେଶେ ବନଚାରୀ । ଗୃହସ୍ଥ ଧର୍ମ କରିଥିଲେ ଉପମା ନାହିଁ ଭୂମଣ୍ଡଳେ । ମହାନ ମାତା ଗର୍ଭରେ ମହାନ ଆତ୍ମା ସ୍ଥାନ ପାଇଥାଏ । ପୃଥିବୀ ପୃଷ୍ଠରେ ଏଭଳି ମାଆ ବିରଳ । ମାତା କୌଶଲ୍ୟା ମାତା ଦେବହୂତି-ମାତା ଦେବକୀ-ମାତା ଯଶୋଦା, ଏହିମାନେ ହିଁ ତ ପ୍ରାତଃ ସ୍ମରଣୀୟ । ଆଜିକାଲି ମଧ ବହୁତ ମାତା ଭଗବାନ ନାମ ପ୍ରଚାରରଣ । ଏବେ ଆସିଲା ବିଛେଦ ଓ ବୈରାଗ୍ୟ ଜୀବନ । ସଂସାର ତ୍ୟାଗ କଲେ-ସ୍ୱାମୀଙ୍କ ତ୍ୟାଗ କଲେ ପୁତ୍ରକୁ ତ୍ୟାଗ କଲେ । ମୁକ୍ତି ପାଇଁ ସାଧନା ପଥକୁ ଆଶ୍ରୟ କଲେ । ସେ ପୁର ତେଜି ଦେବହୂତି ଯୋଗ-ସାଧନେ କଲେ ମତି । ନାରୀ ଜନ୍ମର ସାର୍ଥକତା କ'ଣ ? ମାଆ ବସୁନ୍ଧରା ଯାହା ଚାହେଁ ଜଣେ ନାରୀ ମାଆ ହେବାକୁ ତାହା ଚାହେଁ । ତେବେ ତାହା କ'ଣ ? ଉଭୟଙ୍କ ଇଛା ଗୋଟିଏ । ବସୁନ୍ଧରା ଚାହେଁ,ଏପରି ଏକ ବୃକ୍ଷ ହେଉ ମଣିଷ ହେଉ, ପଶୁ ହେଉକି ପକ୍ଷୀହେଉ ଯାହା ହୋଇଛନ୍ତି ତା ଠାରୁ ଆହୁରି ସୁନ୍ଦର ଗୁଣବାନ ଜନ୍ମଲାଭ କରୁ । ଜଣେ ନାରୀ ମଧ ତାହା ଚାହେଁ । ଥରେ ଭାବନ୍ତୁ କେଉଁନାରୀ ସର୍ବୋତ୍କୃଷ୍ଟ ସ୍ୱାମୀ ହେଉ ବା ପୁତ୍ରହେଉ ଅବା କନ୍ୟା ହେଉ କିମ୍ବା ଧନ-ଧାନ୍ୟ, ଗୋ-ଲକ୍ଷ୍ମୀର ସର୍ବୋଚ୍ଚସ୍ଥାନ ପ୍ରାପ୍ତି ହେବ ପାଇଁ କିଏ ଆଶାୟୀ ନୁହେଁ ? ଯେଉଁ ମାଆର ପୁଅ ଆଇ.ଏ.ଏସ.ପାଏ, ସେ ମାଆ କ'ଣ ନିଜକୁ ଭାବେ ? କିନ୍ତୁ କେଉଁମାଆ କୌଶଲ୍ୟା-ଦେବକୀ-ଯଶୋଦାଙ୍କ ଭଳି ପୁତ୍ର ତ୍ୟାଗକୁ ସହ୍ୟ କରିପାରେ ? କେଉଁମାଆ ଗାନ୍ଧାରୀ ଭଳି ଏକଶତ ପୁତ୍ରଙ୍କୁ ଯୁଦ୍ଧକ୍ଷେତ୍ରକୁ ବିନା ଆଶୀର୍ବାଦରେ ପଠାଇ, ଅକ୍ଷୟ ହେଉ ପୂଣ୍ୟ ଜଗତେ ଧର୍ମର ହେଉ ଜୟ, କହିପାରେ ? କଳିଯୁଗ ହେଲେ ମଧ ଅଛନ୍ତି ସେମାନେ କିଏ ? ନାରୀ, ନାହିଁ ଅରୀ ଯାହାର, କାରଣ ତାର ସ୍ୱାମୀ ପୁତ୍ର ଅଛନ୍ତି, ଭୟକାହାକୁ । କିନ୍ତୁ ଦେବହୂତି । ସେ ପୁରତେଜି ଦେବହୂତି-ଯୋଗ ସାଧନେ କଲେ ମତି । ପତେଜି ସ୍ୱାମୀସଙ୍ଗ ଗଲେ ତହିଁ ବିହରେ ନିମଜିଲେ । ଶୋକରେ ବ୍ୟାକୁଳ ବଦନ-ତଥାପି ଯୋଗେ ଦୃଢ଼ମନ । ପତି ବିଛେଦ ଦୁଃଖ ଯାଇ-ପୁତ୍ରକୁ ସଙ୍ଗତରେ ନେଇ । ରହି ଆନନ୍ଦ ଧରିଚିତ୍ତେ-ଶୋକ ବିଧ୍ୱଂସିକ ତ୍ୱରିତେ । ସେ ପୁତ୍ର ତେଜିଗଲେ ବନେ-ପତି

ବିଛେଦ ଦୁଃଖ ମନେ । ଏହି ସମୟକୁ ଅନୁଧ୍ୟାନ କଲେ ବାସ୍ତବିକ ଏହା ହୃଦୟଫଟା କୋହ । ଏକୁଟିଆ ଆସିଛି ଏକା ଯିବି ବି ଏକା, ଏକା ହୋଇ । ସଙ୍ଗତେ ମୋର ଜଣେ ବି କେହି ଯିବେନାହିଁ । ଏ ଦୁଃଖଟି କିପରି, ବତ୍ସା ବିହୁନେ ଗାବଯେହ୍ନେ-ବ୍ୟାକୁଳେ ରାବଇ ତେସନେ । ସେ ରୂପେ ବ୍ୟାକୁଳେ ରୋଦିଲେ-ହାପୁତ୍ର ବୋଲି ମୋହଗଲେ । ସେ ପର୍ଯ୍ୟନ୍ତ ସେ ଭାବଛନ୍ତି, କପିଳ ତାଙ୍କ ପୁତ୍ର । ତାଙ୍କ ଜଠରେ ସେ ଥିଲେ । ତେଣୁ ସେ ତାଙ୍କର । ଯେପରି ଲୋକେ କହନ୍ତି ଆମ ଠାକୁର । ଭୁଲ, ସେ କାହାରି ନୁହନ୍ତି, କିନ୍ତୁ ଜଗତର ପ୍ରଭୁ । ଏତେଜ୍ଞାନ ଲାଭକରେ ତଥାପି ଆମେ ମୋହର ଅନ୍ଧକାରରେ ପଡିଛନ୍ତି । ତେବେ ସାଧାରଣ ନାରୀ କ'ଣ ନହେବ ? ମାଆ ପୁତ୍ର ବିହୁନେ ମୂର୍ଚ୍ଛାଗଲେ, ଯଶୋଦାବି ମୂର୍ଚ୍ଛା ଯାଇଥିଲେ । କିନ୍ତୁ କୌଶଲ୍ୟା ଏବଂ ଗାନ୍ଧାରୀ ରୋଗଗ୍ରସ୍ତ ହୋଇନାହାନ୍ତି । ପୁତ୍ର ଲାବଣ୍ୟ ରୂପ ଗୁଣି ଆକୁଳେ ରୋଦେ ସୁଲକ୍ଷଣ୍ଲେ ହରି (କପିଳ)-ସେ ରୂପେ ନିତ୍ୟ ଧ୍ୟାନକରି । ଏହିପରି ଜୀବମାନଙ୍କର ଆଶ୍ରୟସ୍ଥଳ ପ- ରଂବ୍ରହ୍ମ ଭଗବାନଙ୍କ ଠାରେ ନିଜର ମତି ସ୍ଥିର ରଖି ସାଂସାରିକ ଜୀବମାନେ ସମସ୍ତ କ୍ଳେଶରୁ ମୁକ୍ତିଲାଭ କରି ସେ ପରାମାନନ୍ଦ ଲାଭକରନ୍ତି । ଦୋହା 'ପ୍ରଥମେ ହରି ବଳଦେବ-ଦ୍ୱିତୀୟେ ହରି ସଦାଶିବ-ତୃତୀୟେ ହରିନନ୍ଦ କହି-ଚତୁର୍ଥେ ହରି ସାଧୁହୋଇ । ହରେ ରାମ ହରେ ରାମ-ରାମ ରାମ ହରେ ହରେ, ହରେ କୃଷ୍ଣ ହରେ କୃଷ୍ଣ-କୃଷ୍ଣ କୃଷ୍ଣ ହରେ ହରେ । ସଂସାର କ୍ଳେଶ ବିନାଶିଲା-ଯେ ଗୁଣ ଭ୍ରମାଦି ରହିଲା । ଆପଣା ଦେହ ପାଶୋରିଲା ସେ ବ୍ରହ୍ମ ସ୍ୱରୂପେ ରହିଲା । ସଂସାରର ସମସ୍ତ ଦୁଃଖ-କଷ୍ଟ-ଯନ୍ତଣା-ଲୋଭ-ମୋହ-ମାୟାର ଉର୍ଦ୍ଧ୍ୱକୁ ଚାଲିଗଲେ । ଷଢ ଚକ୍ରରେ ଓଁ କାର ନାଦଶୁଣିଲେ । କୌଣସି ପ୍ରକାରର ମାନସିକ କ୍ଳେଶ ନଥିଲା କି ଶାରୀରିକ ଦୁର୍ବଳତା ଅନୁଭବ କରୁନଥିଲେ । ବାଳ ମୁକୁଳା ଥିଲା ବସ୍ତ୍ର ଗଳି ପଡିଥିଲା । କିନ୍ତୁ ବାସୁଦେବଙ୍କ ଠାରେ ଚିତ୍ତ ନିମଗ୍ନଥିଲା । ସେ ଯେ କପିଳ ମହାଯୋଗୀ ବିଷୟେ ହେଲେ ବଇରାଗୀ । ମାତାଙ୍କ ସ୍ନେହ ତ୍ୟାଗ କଲେ ଈଶାନ ଦିଗକୁ ସେ ଗଲେ । ମାତା ସ୍ନେହରୁ ବଞ୍ଚିତ ହୋଇ କପିଳ ଯେଉଁ ଉଦ୍ଦେଶ୍ୟରେ ଜନ୍ମ ହୋଇଥିଲେ, କର୍ତ୍ତବ୍ୟ କର୍ମ କରିବାକୁ ସର୍ବତ୍ୟାଗୀ ହୋଇ ବିଦାୟ ନେଲେ । ଦେବହୂତି ଯେଉଁ ସ୍ଥାନରେ ତପସ୍ୟାରତ ହୋଇଥିଲେ, ସେ ସ୍ଥାନର ନାମ 'ସିଦ୍ଧପଦ' କାରଣ ସେ ସେଠାରେ ସିଦ୍ଧିଲାଭ କରିଥିଲେ । ତୈଲୋକ୍ୟ ଜନେ ଶାନ୍ତି ପାଇଁ-ଯୋଗେ ଆପଣା ରୂପ ଧ୍ୟାନ୍ତି । ରହିବେ ବ୍ରହ୍ମକଳ୍ପ ଯାଏ ଲୋକଶିକ୍ଷାରେ ଦେବରାୟ । ପ୍ରତ୍ୟେକ ମହାପୁରୁଷଙ୍କର

ଜନ୍ମର ଉଦ୍ଦେଶ୍ୟ ମହତ । ସଂସାରର ଆବିଳତାରୁ ଜନସାଧାରଣଙ୍କୁ ମହତ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଜନ୍ମଲାଭ କରିଥା'ନ୍ତି । ଆବାହମାନ କାଳରୁ ଏପର୍ଯ୍ୟନ୍ତ ଶତଶତ, ମାନବ ଧରାବକ୍ଷରେ ଜନ୍ମ ଗ୍ରହଣ କରିଛନ୍ତି । ଦାଣ୍ଡର ଭିକାରୀ ଠାରୁ ଆରମ୍ଭରି ମୁକୁଟ ମଣ୍ଡିତ ରାଜଶୀର ଇତ୍ୟାଦିଙ୍କ ନାମ ଲୁଚିଯାଇଛି । ମାତ୍ର ଯେଉଁମାନେ ସେମାନଙ୍କର ଦେବୋପମ ଚରିତ୍ରବଳରେ ଦେଶ ଓ ଦଶର କଲ୍ୟାଣ ସାଧନ କରିଯାଇଛନ୍ତି, ସେମାନଙ୍କର ମରଶରୀର ସର୍ବଗ୍ରାସୀ ଶ୍ମଶାନ ଭସ୍ମରେ ଜଡିତ ହେଲେ ସୁଦ୍ଧା ସେ ଚିର ଅମର । ହରିବୋଲ । ଦୋହା-କୃପାସିନ୍ଧୁ ଦୀନବନ୍ଧୁ ଅଘତମ ଇନ୍ଦୁ ଆହେ ଆତଙ୍କ ନାଶନ । ସେ ନନ୍ଦନନ୍ଦନ ପାଦକରି ଧ୍ୟାନ କେବଣ ପତିତ ଜନ । ମହାପ୍ରଭୁ ହେ/ଦୀନ ଅପରାଧୀ ଦୁଃଖ ଜଳଧିରେ ପଡି ବିଚାରଇ ମନ/ ଦୁଃଖ ସନ୍ତାପ ଖେଦଭାର ଛାମୁରେ କରିବାକୁ ନିବେଦନ । ମହାପ୍ରଭୁ ହେ ।

ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ହରେରାମ ହରେରାମ
ହରେରାମ ହରେହରେ ।

## ହରିକଥା - ୯

ପ୍ରଥମ ଦିବସ ଓ ଶେଷ ଦିବସର କାର୍ଯ୍ୟାବଳୀ ବିଷୟରେ ସମ୍ୟକ ଆଲୋଚନା ପୂର୍ବରୁ କରାଯାଇଛି, ତାହା ଥିଲା ପରୀକ୍ଷିତ ଓ ଶୁକଦେବଙ୍କ ପ୍ରଶ୍ନୋତ୍ତରୀ । "ଅଭିଶାପ-ଆଜୁଁସପଥ ଦିନଶେଷେ-ତକ୍ଷକ ଆସି ମହାରୋଷେ । ତା'ର ଶରୀର ବେରେଖାଉ-ଏ ପାପୀ ଜଗତେ ନଥାଉ ।" ବ୍ରହ୍ମ ଅଭିଶାପ, କ୍ଷମାନାହିଁ ପରୀକ୍ଷିତ କ'ଣ ଚାହିଁଲେ ।' ଏକାନ୍ତେ ବସି ବିଚାରଇ-ନିନ୍ଦିତ କର୍ମ କଲି ମୁହିଁ । କହଇ ମୋତେ ସର୍ପଖାଉ-ଏମୋର କୁଳେ ପାପନୋହୁ । ବ୍ରାହ୍ମଣ ଶାପ କୋପାନଳେ-ଏ ମୋର ନିଜ କର୍ମଫଳେ । ଋଷିମାନଙ୍କ ସହିତ ମହାମୁନି ଶୁକଦେବ ଆସି ପହଞ୍ଚିଲେ । ତାଙ୍କୁ ଅନୁରୋଧ ଜଣାଇଲେ । କହ ଜୀବନ ଯିବା କାଳେ କିବା ସାଧିବି ମହୀତଳେ କିବା ଶୁଣିବା କର୍ଣ୍ଣପଥେ ସ୍ମରଣ କି କରିବି ଚିତ୍ତେବା ମନେ ଉଚ୍ଚାରଣ-ଭଜିବି କାହାର ଚରଣ । ମଧ୍ୟମ ପାଞ୍ଚଦିନ ହରିକଥା ଶୁକଦେବ ଶୁଣାଉଛନ୍ତି । ଏହି ପାଞ୍ଚଦିନ ମଧ୍ୟରେ ଶୁକଦେବ ଭାଗବତର ସାଧନା-ସର୍ଗ-ବିସର୍ଗ-ସ୍ଥିତି-ପୋଷଣ-ଉତି-ମନ୍ୱନ୍ତର-ଈଶାନୁକଥା-ନିରୋଧ-ମୁକ୍ତି-ଆଶ୍ରୟ ।ଏହି ସମ୍ପର୍କୀୟ ବିଷୟବସ୍ତୁ ଉପରେ ଆଧାରିତ

ବିଭିନ୍ନ ସମୟରେ ଘଣଟାବଳୀକୁ କହୁଛନ୍ତି । ଗୋଟିଏ ପ୍ରଶ୍ନ ଫାସି ଖୁଣ୍ଟରେ ଝୁଲିବା ଲୋକ ପ୍ରସବ କାଳୀନ ଯନ୍ତ୍ରଣାଗ୍ରସ୍ତ ରୋଗୀ-ଆସନ୍ନ ମୃତ୍ୟୁ ଅପେକ୍ଷାରେ ଥିବା ବୃଦ୍ଧ ବା ବୃଦ୍ଧା । ଜୀବନରେ କ'ଣ ଚାହାନ୍ତି-ସୁସ୍ୱାଦୁ ଖାଦ୍ୟ କିମ୍ବା ଉତ୍ତମ ରୂପ ଦର୍ଶନ ଅବା ମୁକ୍ତି ? ସେହିପରି ପରିକ୍ଷୀତ କ'ଣ ଚାହିଛନ୍ତି ? ଶୁକଦେବଙ୍କ ଉତ୍ତର ହରିଙ୍କୁ ସ୍ମରଣ-ହରିକଥା ଶ୍ରବଣ ହରି ଦର୍ଶନ । ଏହା ସମାଜକୁ ଶିକ୍ଷା ଦିଏ । ଆଧାତ୍ମିକ ଚିନ୍ତାଧାରାରେ ବଶବର୍ତ୍ତୀ ହେବାକୁ କିନ୍ତୁ ଫାଶୀ ଫାଇବା ଦୋଷି-ପ୍ରସବ କାଳୀନ ରୋଗୀ-ବୁଢାବୁଢୀ ଭଲଚିଜ ଖାଇବାକୁ ଇଛା କରନ୍ତି, କାରଣ ଯଦି ଶେଷହୁଏ ଆରପାରିରେ ଯମରାଜାଙ୍କ ମାର୍କେଟରେ ଏସବୁ ମିଳେନାହିଁ । ତେବେ ଫାଶୀ ପାଇବା ଲୋକ ପରଟା କୁକୁଡା ମାଂସ ସନ୍ତୁଳା-ବାପ-ମାଆ-ଝିଅ ପାଇଁ ବିଭିନ୍ନ ପ୍ରକାର ପ୍ରସ୍ତୁତି ଖାଦ୍ୟ ସାଦ ବୁଢାବୁଢୀଙ୍କ ପାଇଁ ସାଲେପୁର ବିକଳକର ଦୋକାନର ଖିରମନ ନେବାକୁ ଉଦ୍ଦେଶ୍ୟ କ'ଣ ? ଖାଦ୍ୟପ୍ରତି ଲୋଭ ନା ପିତା-ମାତାର ସ୍ନେହ-ମମତା ଆକର୍ଷଣ ? ଶୁଣ ଜନନୀ ଏକ ଚିତ୍ତେ-ସଂସାର ଦୁଃଖ ସୁଖ ଏତେ । ମନ ନିବେଶି ତହିଁକଲା-ଇନ୍ଦ୍ରିୟ ଜିଣି ନପାରିଲା । ତେଣୁ ହୋଇଲା ମୃତ୍ୟୁ ତା'ର-ଏଦଣ୍ଡ ଅତି ଭୟଙ୍କର । ବନ୍ଧୁବାନ୍ଧବ ଶୋକାକୁଳେ-ତା ଦୁଃଖ ଭୋଗୀକେ ନୋହିଲେ । ବ୍ୟର୍ଥେ ପୋଷିଲା ତାଙ୍କୁ ଦୁଃଖେ ସେ ଏବେ ତେଜିଲେ ବିମୁଖେ । ପ୍ରାଣ ଯିବାକୁ ବେଳେ ମାଏ ଅତି ବେଦନା ଜୀବ ପାଏ । ସୁଖଲାଭ ଆଶାରେ ବଡ କଷ୍ଟରେ ସେ ଯେଉଁ ଧନ ଅର୍ଜନ କାରିଥାଏ, କାଳରୂପୀ ଭଗବାନ ତାହା ନଷ୍ଟ କରିଦିଅନ୍ତି । ଏଇଥିପାଇଁ ସେ ଶୋକକରେ । ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ-ଘଟ ଛୁଟିଲେ ତୋତେ ବୋଲିବେ ଭୂତରେ-ଘର ଘରଣୀ ଦେହ କିଳାଉ ଥିବ-ଘେନିଜ୍ଞାତି କୁଟୁମ୍ବ ଶୁଦ୍ଧ ହୋଇବେ ରେ (୪) । କୁଳଟା ସ୍ତ୍ରୀର କପଟପୂର୍ଣ୍ଣ ପ୍ରେମତାକୁ ଘାରୁଥାଏ, ଅମୃତସମ ଯୋନି ଦିଶେ, ଯମ ରାଜାଙ୍କ ରାଜ୍ୟରେ ତାହା ମିଳିବ ନାହିଁ । ହେ ପିଆଦାରଣ, କିଛିନେଇ ମହଲତ ଦିଅ । ଶିଶୁ ମାନଙ୍କର ଦରୋଟି କଥାରେ ସେ ମୋହିତ ହୋଇଯାଏ । "ମାଇଁ ଡାଡି-ମମି-ଆଣ୍ଟି" । ଏହିପରି ଅବିଶାନ୍ତ ଭାବରେ ଦୁଃଖାବହ, କପଟପୂର୍ଣ୍ଣ ଗୃହକର୍ମରେ ସେ ଲିପ୍ତ ରହିଥାଏ । ତଥାପି ମଣିଷ ଦୁଃଖକୁ ସୁଖାବୋଲି ଭାବେ । ହାଇରେ କପାଳ, ନହେଲୋ ଦିଫାଳ । ଦେହା " ଅରକ୍ଷ ରକ୍ଷକ ଆହେ ମହାବାହୁ ଅପକ୍ଷ ପକ୍ଷ ଗୋ ସାଇଁ ଅପ୍ରାଧ ଭଞ୍ଜନ ଆହେ ଅନ୍ତର୍ଯ୍ୟାମୀ ଜଗନ୍ନାଥ ଭାବଗ୍ରାହୀ, ମହାପ୍ରଭୁ ହେ । (ଆରତ ଧ୍ୱଂସନ-ନିତ୍ୟାନନ୍ଦ ଦାସ) ଯେ ମରିଛି ସେ ଯମପୁର ଦେଖିଛି, ଦଣ୍ଡ ପାଇଛି ଆମେ କ'ଣ ଥରେ ମରିପାରିଛୁ ଯେ ଆମେ ଏ କପିଳ ହୁଅନ୍ତୁ କି ଶୁକଦେବ ହୁଅନ୍ତି, କହିଲେ ବିଶ୍ୱାସ

କରିବୁ ? ଯେତେ ପ୍ରକାରର ଖରାପ କାମ ବୋଲି ଏ ଭାଗବତ କହେ ଆମ୍ଭେ ମାନିଲେ ଏ ସମୟରେ ଚଳି ପାରିବା କି ? ମହାଜନ ଯେନ ଗତସଃପନ୍ଥା । ଯାହା ପାଖରେ ବେଶୀ କଳାଧନ ଅଛି ? ଯମଦୂତମାନେ କିଳାପୋତାଇ ନେଲେ ନାହିଁ କି ମହଲତ ଦେଲେ ନାହିଁ । ସେ ଦୂତବଡ ଭୟଙ୍କର-କୁପିତ ନୟନ ଗଭୀର । ତାଙ୍କ ଦର୍ଶନେ ପାପୀବନ ହୃଦୟ ଭୟେ କମ୍ପମାନ । ଶରୀର ଭୀଷଣ ଯନ୍ତ୍ରଣା ପାଏ । ' ସେ ଅତିକଷ୍ଟେ ଭୟପାଇ-ନିଜ ପାତକ ସୁମରଇ ।' ହନୁମାଲାବେଳେ ସତ କହେ । ବୁଢା ବସି ଦେଖୁଛି ଓ ବୁଢୀ ପାଇଁ ଆଖିରୁ ଲୁହ ବୋହୁଛି । ବୁଢୀ ଅତୀତର କୁକର୍ମ କଥା ମନେ ପକାଇ କେତେ କହୁଛି । ଶେଷରେ ପାଦଛୁଇଁ ବୁଢାକୁ କହିଲା, ସେ ବୁଢାକୁ ବିଭା ପୂର୍ବରୁ ଦଶଟି ସ୍ୱାମୀ କରିଥିଲା ବୋଲି ପ୍ରକାଶ କରିବା ମାତ୍ରେ ତା'ର ଜୀବନ ଛାଡିଗଲା । ବୁଢା କହୁଛି, ଆରେ ଏଟା ଶକତ.....ଛି,ଛି । କିନ୍ତୁ ସେତେବେଳେକୁ, ତହିଁ ତପ୍ତ ବାଲୁକାରେ ପ୍ରବେଶ କରନ୍ତି ସତ୍ୱରେ । ଏହି ଭଳି ବିଭିନ୍ନ ପ୍ରକାରର ଦଣ୍ଡ ଦିଅନ୍ତି । ସେମାନେ ଯମରାଜାଙ୍କ ପିଆଦା ଛାଡିଦେବେ ? ଆମ ଥାନାବାବୁଙ୍କ ପିଆଦା ଗାଈଗୋରୁ ଭଳି ପିଟୁଛନ୍ତି, କାହିଁକି ? ଅର୍ଡର । ଜୀବନର ଶେଷଦୃଶ୍ୟ, ଏହା ପ୍ରତ୍ୟେକଙ୍କର ଭୋଗା ଭୋଗ ହୁଏ, ତାହାର ମୂଳକାରଣ କ'ଣ ? ଏହିକଥା ମାତା ଦେବହୂତି ପୁତ୍ର କପିଳଙ୍କୁ ପ୍ରଶ୍ନ କରିଛନ୍ତି ? ପବିତ୍ର ଜୀବନଯାପନ କଲେ ଜୀବନ କାଳରେ ଯମଯାତନା ନଥାଏ । (୧) ଯଥାଶକ୍ତି ସ୍ୱଧର୍ମା ପାଳନ କରିବ, (୨) ଶସ୍ତ୍ର ବିରୁଦ୍ଧ ଆଚରଣରୁ ନିବୃତ୍ତ ରହିବ (୩) ଈଶ୍ୱରଙ୍କ କୃପାରୁ ଯାହା ମିଳିଲା ସନ୍ତୁଷ୍ଟ ରହିବ (ଆହାରେ ଭଲ ମନ୍ଦ ନାହିଁ-ଯେସ୍ଥାନେ ଯେବଣ ମିଳଇ) (୪) ସାଧୁମାନଙ୍କର ପଦବନ୍ଦନା କରିବ, (୫) ବିଷୟ ବାସନାରୁ ନିବୃତ୍ତ ରହିବ, (୬) ମୋକ୍ଷଧର୍ମ ପ୍ରତି ଆକୃଷ୍ଟ ହେବା, (୭) ମୌନବ୍ରତ ପାଳନ କରିବା, (୮) ବ୍ରହ୍ମଚର୍ଯ୍ୟ ପାଳନ କରିବା ଇତ୍ୟାଦି ଦ୍ୱାରା ଯମଯନ୍ତ୍ରଣାରୁ ରକ୍ଷା ମିଳେ । ନଚେତ ଯମ ଯାତନାରୁ ବା ନର୍କରୁ ରକ୍ଷା ମିଳିନଥାଏ । କାରଣ ଏମାନେ ଇନ୍ଦ୍ରିୟକୁ ଜୟ କରିନଥାନ୍ତି । ଏଭଳି ମନୁଷ୍ୟ ଦୁନିଆରେ ବିରଳ । ସ୍ତ୍ରୀ ଠାରେ ଆସକ୍ତ ରହିବା ଦ୍ୱାରା ବା ଅନ୍ତକାଳରେ ସ୍ତ୍ରୀର ଚିନ୍ତା କରିବା ଦ୍ୱାରା ଜୀବ ସ୍ତ୍ରୀ ହୋଇ ଜନ୍ମହୁଏ । ଏସ୍ମସ୍ତ ହେଉଛି ମାୟା । ପରମାନନ୍ଦେ ସୁଖପାଇ-ଆନନ୍ଦେ ସଂସାରେ ଭ୍ରମଇ । ଛାଡଇ ସର୍ବ ସଙ୍ଗମାନ-ପରମାନନ୍ଦେ ରହେପ୍ରାଣ । ହରିବୋଲ । 'ଈଶ୍ୱର ଈଶ୍ୱର ଈଶ୍ୱର-ପଦୁ ଗଳୁଛି ସୁଧାଧାର ।ସେ ପାନକରି ଉଷି ବ୍ରହ୍ମର୍ଷି ଖଲେ ତରି । ସେ ବ୍ରହ୍ମଉଷିଙ୍କ ପୟରେ-ମନ ମୋ ଥାଉ ନିରନ୍ତରେ । ମନ ମୋ ନିରନ୍ତରେ ଥାଉ-ଶ୍ରୀହରି ବୋଲି ଦିନଯାଉ ।

ଶ୍ରୀ ହରି ବୋଲି ଯାଉଜୀବ-ମୋତେ ଉଦ୍ଧାର ବିଶ୍ୱଦେବ ।'

"ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ହରେରାମ ହରେରାମ ରାମରାମ ହରେହରେ ।"

## ହରିକଥା - ୧୦

ସେହି ବିଶ୍ୱଦେବଙ୍କୁ ମହାରାଜ ପରୀକ୍ଷିତଙ୍କୁ ଶୁକଦେବ କହନ୍ତି ଏବଂ ମାତା ଦେବହୁତିଙ୍କୁ ପୁତ୍ର କପିଳ ମଧ ପ୍ରାର୍ଥନା କରିବାକୁ କହନ୍ତି ଏବଂ ତାଙ୍କ ସ୍ୱରୂପକୁ ଦର୍ଶନ କରିବାକୁ କହୁଛନ୍ତି । ସେ ବିଶ୍ୱଦେବ କିଏ-ସ୍ୱୟଂ ଜଗନ୍ନାଥ । ' କୃପାସିନ୍ଧୁ ଦୀନବନ୍ଧୁ ଅଘତମ ଇନ୍ଦୁ ଆହେ ଆତଙ୍କ ନାଶନ, ସେ ନନ୍ଦ ନନ୍ଦନ ପାଦକରି ଧ୍ୟାନ କେବଣ ପତିତ ଜନ, ମହାପ୍ରଭୁ ହେ । ଦୀନ ଅପରାଧୀ ଦୁଃଖ କଳଧିରେ ପଡି ବିଚାରଇ ମନ, ଦୁଃଖ ସନ୍ତାପ ଖେଦଭାର ଛାମୁରେ କରିବାକୁ ନିବେଦନ, ମହାପ୍ରଭୁ ହେ । (ଆରତ ଧ୍ୱଂସନ-ନିତ୍ୟାନନ୍ଦ ଦାସ) ନୀଳ ନବଘନ ସୁନ୍ଦର ବଦନ ଶ୍ରୀ ମୁଖମାଧୁରୀ ଅତିଶୋଭା, ଶୀରେ ଶୀଖିଚୂଳ ମାଳତୀ ବକୁଳ ଝଙ୍କାରୀ ମଧୁପ କୁଳପ୍ରଭା । ଅଳକା ଗଳିକି ଅଳି ଶିଶୁପଂକ୍ତି ଶ୍ରୀମୁଖ ନବ ନଳିନ ଜାଣି, କପାଳେ ଚନ୍ଦନ ବିନ୍ଦୁଶୋଭା ବର୍ଣ୍ଣେଉଭା ହୋଇଛି କି ନିଶାମଣି । ଭ୍ରୂଲତା ସୁନ୍ଦର କିଏ କାମକର କୋଦଣ୍ଡ ରଖିଛି ପଟେ୍ୟହୁଏ ବିକଚ କମଳ ପ୍ରାୟ ବେନିଡୋଳା ଲହରୀ ଖେଳଇ କର୍ଣ୍ଣଯାଏ । ମନୋହର ନାସା ପୁଟେ ସୁଘଟିତ ବର୍ତ୍ତୁଳ ଗଜ ମୁକୁତା ହାର, ବିମ୍ବଫଳ ଜ୍ୟୋତି ଅଧର ପଲ୍ଲବ ମନ୍ଦହାସେ ମୋହେ ତିନିପୁର । ମକର କୁଣ୍ଡଳ କି ରବି ମଣ୍ଡଳ କର୍ଣ୍ଣେ ଝଟକନ୍ତି ତେଜଘେନି, ଭକତ ତିମିର ନାଶିବାକୁ ଉଦେ ହୋଇଛି କି ରବି ବେନି । ଚାରୁକଣ୍ଠେ ଶୋଭେ ମୁକୁତା କନକ କଣ୍ଠୀମିଶାମିଶି ବନମାଳ, କଉସ୍ତୁଭ ମଣି ଗୁରୁତାର ଜିଣି ଅନୁପମାର ତରଣ କୂଳ । ମତ୍ତ କରିବାର କରକୁ ନିନ୍ଦଇ ବୃଷାଳ ନଳିନ ବାହୁବେନି, କିରିଟୀ ବାହୁଟି ମୁଦ୍ରିକା ଅଙ୍ଗୁଷ୍ଠି ଅଶେଷ ମୁକୁତା ଶୋଭାଘେନି । ହୃଦୟ ବିସ୍ତାର ଶ୍ରବସ୍ତ୍ର ପୟର ଚିତ୍ରିତ ଚନ୍ଦନ ମୃଗମଦେ, କଟିରେ କିଙ୍କିଣି ଶ୍ରେଣୀ ଦିଶିଜିଣି ପୀତପଟ ସୌଦାମିନୀ ଭଦେ । ପୟର ଯୁଗଳେ ନୂପୁରମଞ୍ଜୁଳ ରୁଣିତ ଶବଦେ ଧ୍ୱନିକରେ, ଅରୁଣ ଚରଣ ତଳେ ବିରାଜିତ ଅଷ୍ଟାଦଶ ଚିହ୍ନ ଯହିଁ ଧରେ । ଚତୁର୍ବର୍ଗ ମଧୁ ଯହିଁରୁ କ୍ଷରିତ ବାଞ୍ଛାକଳ୍ପତରୁ ବୋଲି ମୋର ପତିତେ ସିଦ୍ଧି ଦୁର୍ବୁଦ୍ଧି ଅପରାଧି ନିତ୍ୟାନନ୍ଦ ବୋଲେ ରଖବାରେ' । ଆରତ ଧ୍ୱଂସନ, ନିତ୍ୟାନନ୍ଦ ଦାସ (ମହାପୁରୁଷ

ନିତ୍ୟାନ୍ଦ ଗୋସାଇଁ ଜୀବନୀ) ମହାମୁନି କପିଳ ଓ ମହାମୁନି ଶୁକଦେବ ଯଥାକ୍ରମେ ମାତା ଦେବହୁତି ଓ ପରୀକ୍ଷିତଙ୍କୁ ଭଗବାନଙ୍କ ସ୍ୱରୂପ ବିଷୟରେ ପ୍ରଦର୍ଶନ କରିଛନ୍ତି। ହରିବୋଲ। ଯେ ସାଧୁ ସଭାଜନ ମଧ୍ୟେନିତ୍ୟ ଗାବନ୍ତି ମନସୁଖେ। ଶକଳ ପାପ ବିନାଶନ୍ତି-ଜନ୍ମ ମରଣୁ ନିସ୍ତରନ୍ତି। ଭାଗବତ ସମ୍ପୂର୍ଣ୍ଣ ଲୋକଶିକ୍ଷା ପାଇଁ ଉଦ୍ଦିଷ୍ଟ। ଦେବହୂତି କହନ୍ତି ଏ ବିଶ୍ୱ ଯାହାର ଉଦରେ ମୁଁ ତାକୁ କେମନ୍ତେ ଜଠରେ। ଧଇଲି ବୁଝି ନପାରଇ କେବଳ ମାୟା ତୋ ଗୋସାଇଁ। ତୁ ଦୁଷ୍ଟ ନିବାରଣ ପାଇଁ ତୁ ସାଦୁ ରକ୍ଷଣେ ଗୋସାଇଁ। ଏଣୁ ତୁମ୍ଭର କଳେବର ଅନ୍ୟଥା କି କାର୍ଯ୍ୟ ତୁମର। ଏହାର ଉତ୍ତର ଶ୍ରୀମଦ୍ ଭାଗବତ ଦିଏ ଯେଉଁ ନାରୀ କାମ-ବାସନା ଦମ୍ଭ-ଦ୍ୱେଷ-ଲୋଭ-ଅସଦାଚାର ଅହଙ୍କାର ଆଦି ତ୍ୟାଗ କରି ନିଷ୍ଠା, ଆତ୍ମଶୁଚି-କୁରୁଗୌରବ-ସଞ୍ଜମ-ସେବା-ସତ୍ୟ ମଧୁର ବାକ୍ୟଦ୍ୱାରା ତେଜସ୍ୱୀ ସ୍ୱାମୀଙ୍କୁ ନିଜ ସେବାରେ ସନ୍ତୁଷ୍ଟ କରିପାରେ,ଏ ଦୁନିଆରେ। ଅସମ୍ଭବ ନୁହେଁ। କିନ୍ତୁ ଯଦି ସ୍ୱାମୀ...... ?

ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ହରେରାମ ହରେରାମ
ହରେରାମ ହରେହରେ।

## ହରିକଥା - ୧୧

"ଭୋ ମାତ ଦେଖ ସୁବିଚାରେ ନରକ ସ୍ୱର୍ଗ ଏଇଠାରେ ନରକ ଯାତନା ଏତକ ସ୍ୱର୍ଗଟି ନାନାଭୋଗ ସୁଖ"। କିନ୍ତୁ ସଂସାରଟା ଦୁଃଖପୂର୍ଣ୍ଣ। ସାମାନ୍ୟମାତ୍ର ସୁଖନାହିଁ। ଯାହାଟା ସୁଖ ବୋଲି ଭାବୁଛେ ତାହାହିଁ ଦୁଃଖ। କେବଳ ମାୟା ଆଚ୍ଛନ୍ନ ସୁଖ ରୂପକ ଦୁଃଖ। ମେଜିକ୍‌ବାଲା ଯାହା ଦେଖାଏ, ତାହାହିଁ ମିଥ୍ୟା। ଯାହାଟା ନ ଦେଖାଏ ତାହାହିଁ ସତ୍ୟ। କିନ୍ତୁ ଆମ ଚକ୍ଷୁରେ ସତ୍ୟ। ଆନନ୍ଦ ଦିଏ କିନ୍ତୁ କ୍ଷଣିକ ମର୍କଟି ରମ୍ଭା। ସିଂଘାଣି ନାକି, ସୁନ୍ଦର ମୁଖୀ, ଯୌବନ ଜୁଆର ମାଡିଆସେ ପରେ ପରେ ଭଟା ପଡିଲେ ସେ ରୂପନଥାଏ। ଯେ ସେ ଜୁଆର ଭାସିଯାଏ ବା ଯାହାକୁ ସେ ଜୁଆରେ ଭସାଇ ନିଏ ସେ ନର୍କରେ ପଡେ। ତେବେ ସେ ଦୃଶ୍ୟରେ ଜୁଆର କାହାର ହାତରେ ପଡିନାହିଁ ବା କିଏ ହାତପାହାନ୍ତାକୁ ଅସନ୍ତିନାହିଁ। ତେବେ ଏକ ପାଖିଆ ପ୍ରେମ କ'ଣ ? ଥରେ ନାରଦ ମଧ ଏକପାଖିଆ ପ୍ରେମ କରି ହଟହଟାରେ ପଡିଥିଲେ। ଏଥିରେ କୌଣସି ଆଶ୍ଚର୍ଯ୍ୟନାହିଁ। ନାରଦ-ଶିବ-ବ୍ରହ୍ମା ଏମାନଙ୍କ

ମଧରୁ କାହାକୁ ଅନ୍ଧକରି ନାହିଁ । ଜଗତରେ ଏପରି କିଏ ଅଛି, ଯାହାକୁ କାମ ନ ନଚାଉଛି । ତୃଷ୍ଣା କାହାକୁ ପାଗଳ ନକରିଛି ? କ୍ରୋଧ କାହାକୁ ହୃଦୟକୁ ଜଳାଇ ନାହିଁ । ଏହି ସଂସାରରେ ଏପରି ଜ୍ଞାନୀ-ତପସ୍ୱୀ-କବି-ବିଦ୍ୱାନ କିଏ ଅଛି ଯାହାକୁ ଲୋଭ ପ୍ରତାରିତ ନକରିଛି । ସମ୍ପତ୍ତିର ଗର୍ବ କାହାକୁ କୁଟକ ନ କରିଛି ? ପ୍ରଭୁତ୍ୱ କାହାକୁ ବଧିର ନ କରିଛି ? କାହାକୁ ମୃଗନୟନର ନେତ୍ରବାଣ ଆଘାତ ନ କରିଛି ?କାହାକୁ ମାନ ଓ ମଦ ନଛୁଇଁ ଛାଡିଛି ? ଯୌବନ ଜ୍ୱର କାହାକୁ ପାଗଳ ନକରିଛି ? ମମତା କାହାର ଯଶ ନକରି ଛାଡି ଚାଲିଛି ? ମାତ୍ସର୍ଯ୍ୟ କାହାକୁ ଦୋହଲାଉ ନାହିଁ ? ଚିନ୍ତାଜ୍ୱର କାହାକୁ କ୍ଷମା ଦେଇଛି ? ଜଗତରେ ଏପରି କିଏ ଅଛି ଯାହାକୁ ମାୟା ନ ଘାରିଛି ? ପୁତ୍ର-ଧନ-ଲୋକ ପ୍ରତିଷ୍ଠା ଏ ତିନିଙ୍କର ପ୍ରବଳ କାମନା କାହାର ବୁଦ୍ଧିକୁ ଭ୍ରଷ୍ଟ ବା ମଳିନ ନକରିଛି ? ଏ ସବୁ ମାୟାର ବଳବାନ ପରିବାର । ଏହି ଅସଂଖ୍ୟ । ସେ ଅଟଇ ଦାସୀ ରଘୁପତିଙ୍କର, ବୁଝନ୍ତେ ମିଥ୍ୟା ସେ ପୁଣ । ରାମକୃପା ବିନା ନଯାଏ ଖଗେଶ,ପଣକରି କହେ ଶୁଣ । ମାତା, ଏ ସମସ୍ତେ ନରକ ଆଡକୁ ଟାଣି ନିଅନ୍ତି । ଏହିଠାରେ ମଧ୍ୟେ ସ୍ୱର୍ଗ ଅଛି । କିନ୍ତୁ ଶ୍ରୀହରିଙ୍କ କୃପାବିନା ହୁଏନାହିଁ । ଅନ୍ତରାଳରେ ସ୍ୱୟଂ ଭଗବାନ ରହି ସବୁ ଦେଖୁଛନ୍ତି । ତେବେ ସେ କିଏ ? ସେ ସଚିଦାନନ୍ଦ ଅଜନ୍ମା-ବିଜ୍ଞାନ ସ୍ୱରୂପ-ରୂପ ଓ ବଳଧାମ-ସର୍ବବ୍ୟାପକ-ସର୍ବରୂପ-ଅଖଣ୍ଡ-ଅନନ୍ତ-ଅମୋକ୍ଷ ଐଶ୍ୱର୍ଯ୍ୟରେ ଯୁକ୍ତ ସେ ନିର୍ଗୁଣ-ମହାନ-ଇନ୍ଦ୍ରିୟରର୍ଦ୍ଧରେ-ସର୍ବଦ୍ରଷ୍ଟା-ନିର୍ଦ୍ଦୋଷ-ଅଜେୟ-ମମତା ରହିତ-ନିରାକାର-ମୋହ ରହିତ-ନିତ୍ୟ-ମାୟା ରହିତ ପ୍ରକୃତି ଠାରୁ ଉର୍ଦ୍ଧରେ । ଆରେ ପୁତ୍ର କପିଳ ! ବାବା 'ମୋତେ ସେହିରୂପ ଦେଖାଅ ହରି' ଏହି ହେଉଛି ଜୀବନର ସୁଖର ପଥ । ସ୍ୱର୍ଗ, ତଥାପି ଶୁଣ ଜନନୀ ଏକଚିତ୍ତେ ସଂସାର ଦୁଃଖ ସୁଖ ଏତେ । କେ ଜାଣେ ଗତିର ବିଚାର, କେ ଜାଣେ । ସେ ଜାଣେ ଗତିର ବିଚାର, କେ ଜାଣେ । ସେ ଜାଣେ ଗତିର ବିଚାର । ହରିବୋଲ ।

ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ହରେରାମ ହରେରାମ
ହରେରାମ ହରେହରେ ॥

## ୪୩

# କଳି ଯୁଗେ ଧନ୍ୟ ନରା ଯୋ ମୃତାଃ - ୧

ଯିଏ ମରିଗଲା, ସିଏ ତରିଗଲା ଏବଂ ଯିଏ ମଲା, ସିଏ ଗଲା । ଦୁଇଟି କଥା କହିଥାନ୍ତି । ମୃତକ ପରିବାରର ପଡ଼ୋଶୀମାନେ ଲୋକଟି ବଞ୍ଚିଥିବାବେଳେ ତା'ର ଶାରୀରିକ ଅସୁସ୍ଥତା ହେଉ କିମ୍ବା ବୟସାଧିକ୍ୟ ଜରାଗ୍ରସ୍ତ ଅକ୍ଷମତା ହେଉ ଅଥବା ପାରିବାରିକ ଅବହେଳାଜନିତ ପୁଅ ବୋହୂମାନଙ୍କର ବ୍ୟବହାର ହେଉ ବା ନିଃସଙ୍ଗ ଜୀବନଯାପନ ହେଉ ଲୋକଟିର ମୃତ୍ୟୁର ଆବଶ୍ୟକତା ଥିଲା ବୋଲି କହିଥାଆନ୍ତି, କିନ୍ତୁ ଏକଥା ସତ୍ୟ ଯେ କେହି ମରିବାକୁ ଇଚ୍ଛା କରେନାହିଁ । କିନ୍ତୁ କଳିଯୁଗର ଲକ୍ଷଣ ସୂଚାଇ ଦିଏ, 'କଳିଯୁଗର ଧନ୍ୟ ନରା ଯୋମୃତାଃ' । ଯେଉଁ ଲୋକ ମରିଯାଏ ସେ ଧନ୍ୟ । କିନ୍ତୁ ଯେ ବଞ୍ଚି ରହେ, ତାକୁ ଏ ଦୁନିଆରେ ଭୋଗ କରିବାକୁ ପଡ଼ିଥାଏ । ଏ ସଂସାରରୁ କ୍ରମଶଃ ଲୋପ ପାଉଛି ଧର୍ମ-ତପ-ସତ୍ୟ, ତା' ପରିବର୍ତ୍ତେ ଅଧର୍ମ-ଅତପ-ଅସତ୍ୟ ରାଜୁତି କରୁଛି । ସେଥିପାଇଁ ଯେଉଁମାନେ ସାମାନ୍ୟ ସୁବିଧାରେ ଥାଆନ୍ତି, ସେମାନେ ଅସୁବିଧାଗ୍ରସ୍ତ ଲୋକମାନଙ୍କ ପାଇଁ ଏହାହିଁ ମଙ୍ଗଳକାମନା ବୋଲି ମନ୍ତବ୍ୟ ଦିଅନ୍ତି । ଦୀର୍ଘଦିନ ବଞ୍ଚି ରହିଥିବା ବ୍ୟକ୍ତିର ଅଭିଜ୍ଞତା କହେ, 'ଧର୍ମ ସଂକୁଚିତଂ-ତପୋ ବିରୋହିତଂ-ସତ୍ୟଂ ଚ ଦୂରଂ ଗତଂ - ଲୋକ ଧର୍ମାହତଂ - ଦ୍ୱିଜାଶ୍ଚ ଲୋଭିତା- ନାରୀବସା ମାନବା - ନିର୍ବୀର୍ଯ୍ୟା ପୃଥିବୀ-ନିରୋଷାଧିରସା-ନୀଚା ମହତ ଗଣ-ଭୂପାଳଃ ନିଜ ଧର୍ମ କର୍ମ ରହିତା-ବିପ୍ର କୁମାର୍ଗ ଗତା-ଭାର୍ଯ୍ୟା ଭର୍ତ୍ତୃ ବିରୋଧିନୀ- ପରରତା ପୁତ୍ର ପିତା ଦ୍ୱେଷିଣାଂ-ହାକଷ୍ଟଂ ଖଳୁ ବର୍ତ୍ତତେ-କଳି ଯୁଗେ ଧନ୍ୟ ନରା ଯୋମୃତାଃ ।' ପୁନରାୟ କଳିଯୁଗରେ ଅତି ବେଶୀ ହେଲେ ମଣିଷ ଏକଶହ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ବଞ୍ଚିପାରେ କିନ୍ତୁ ଷାଠିଏ ବର୍ଷ ପରେ ତାକୁ ଯନ୍ତ୍ରଣା ସହ୍ୟ କରିବାକୁ ପଡ଼େ । ଏହି ଯନ୍ତ୍ରଣା ଗୁଡ଼ିକ ପାଇଁ ଉଦ୍ଦିଷ୍ଟ । ତେଣୁ କଳି ଯୁଗେ ଧନ୍ୟ ନରା ଯୋସୃତାଃ । ଯେତେବେଳେ ଚାରିଟି ଯୁଗର ସମୟ ଧାର୍ଯ୍ୟ କରାଗଲା ସେତେବେଳେ ଏହା ମଧ୍ୟ କୁହାଯାଇଛି ପୁଣ୍ୟ ଏକ ପାଦ ବେଳେ ପାପ ତିନି ପାଦ । ଅର୍ଥାତ୍ ଶତକଡ଼ା ୭୫ ଭାଗ ପାପ ଏବଂ ୨୫ ଭାଗ ହେଉଛି ପୁଣ୍ୟ । ଏଭଳି ଅଣନିଶ୍ୱାସୀ ହୋଇ ଏ ସଂସାରରେ ବଞ୍ଚିବା ଅପେକ୍ଷା ଯେ ମରିଗଲା ସେ ତରିଯିବା ହିଁ ଯଥାର୍ଥ । 'ଧର୍ମ ସଂକୁଚିତଂ ଠାରୁ ଧନ୍ୟ ନରା ଯୋମୃତାଃ,' ପର୍ଯ୍ୟନ୍ତ ଯେତେଗୋଟି କଳିଯୁଗର ଲକ୍ଷଣ କୁହାଯାଇଛି, ତନ୍ମଧ୍ୟରୁ ବର୍ତ୍ତମାନ ୨୫ ଭାଗ ଖାଣ୍ଟି ଏବଂ ୭୫ ଭାଗ ଭେଜାଲରେ ଏ ସଂସାର ପରିପୂର୍ଣ୍ଣ । ଏହାର ନିରାକରଣ ବା ପରିବର୍ତ୍ତନ କେବଳ

ସେହି ସମୟ ହିଁ କରିବାର ଅଧିକାର ପାଇଛି । ଧୈର୍ଯ୍ୟ ବିବେକକୁ ନିୟନ୍ତ୍ରଣ କରିବା ସହିତ ପ୍ରାଣ ଅସ୍ଥିରତାକୁ ଆୟତାଧୀନ କରାଏ । କିନ୍ତୁ କଳିରେ ଅନୁଗତ ପ୍ରାଣ ଅର୍ଥାତ୍ ଲୋମକୂପରେ । ସାମାନ୍ୟ କିଛି ଆଘାତକୁ ସହ୍ୟ କରିବା କଷ୍ଟକର । ସଙ୍ଗେ ସଙ୍ଗେ ତାର ପ୍ରତିଘାତ ଏପରି ହୁଏ ଯେ ମନୁଷ୍ୟର ମନକୁ ବିଚଳିତ କରାଏ । ଅସ୍ଥିର କରାଏ । ଫଳରେ ପ୍ରତିଶୋଧ ପରାୟଣ ହୁଏ । କିନ୍ତୁ ଦ୍ୱାପର ଯୁଗରେ, ରକ୍ତଗତ ପ୍ରାଣ', ରକ୍ତ ଗରମ ନ ହେଲେ ପ୍ରତିକ୍ରିୟା ସୃଷ୍ଟି ହୁଏ ନାହିଁ । ତ୍ରେତୟାରେ ଅସ୍ଥିଗତ ପ୍ରାଣ । କଥାରେ କହନ୍ତି ମୋ ହାଡକୁ ବାଧିଛି, ଛାଡୁଛି କିଏ ? ତାହା ମିଥ୍ୟା, କଳିରେ ଚର୍ମକୁ ବାଧିଛି । ସତ୍ୟରେ ମଜ୍ଜାଗତାଃ ପ୍ରାଣଃ ଇଚ୍ଛା ମୃତ୍ୟୁଃ । ତେଣୁ ମନୁଷ୍ୟ ଏକ ଲକ୍ଷ ବର୍ଷ ବଞ୍ଚି ପାରୁଥିଲା । ଆମେ କଳି ଯୁଗରେ ଜନ୍ମ ହୋଇଥାଏ । କଳି ଯୁଗର ଲକ୍ଷଣ ଅନୁଯାୟୀ ତାର ଅର୍ଦ୍ଧାଧିକ ସୀମା ଅତିକ୍ରମ କରିସାରିଲିଣି । କିନ୍ତୁ ଏ କାଳରେ ଯାହା ସବୁ ଘଟି ଚାଲିଛି ଆମକୁ କାହିଁକି କିଛି ଅସୁବିଧା ହେଉଛି ବୋଲି ଅନୁଭବ କରିପାରୁନାହୁଁ । ଏତିକି ବୁଝିଛି ଜନ୍ମ ହେଲେ ଦିନେ ମୃତ୍ୟୁ ଆସିବ । ଏହାହିଁ ସତ୍ୟ । ତେଣୁ ଆମେ ଯେତେ ଦୁଃଖ କଷ୍ଟ ପାଇଲେ ମଧ ମରିବାକୁ ଇଚ୍ଛା କରୁନାହୁଁ ଅଥଚ ଲୋକ ବିଭିନ୍ନ ପ୍ରକାରର ଆତ୍ମହତ୍ୟାରେ ମରୁଛି ତେବେ କାହିଁକି ? 'ଭାଗବତ ପୂଣ୍ୟଶ୍ଳୋକ ମହର୍ଷି ବ୍ୟାସଦେବ ଲେଖିଥିବା ବିଷୟକୁ ହଜାର ହଜାର ବର୍ଷ ବିତିଗଲାଣି । ଅତିବଡ଼ୀ ଜଗନ୍ନାଥ ଦାସ ସେହି ସଂସ୍କୃତ ଭାଗବତକୁ ଓଡ଼ିଆ ଭାଷାରେ ଲେଖିଛନ୍ତି । ତେବେ ସେହିଦିନ ସେମାନେ ଆଗତ ଭବିଷ୍ୟ ସମ୍ବନ୍ଧରେ ସୂଚନା ଦେଇଥିଲେ । ଅତଏବ ଏକଥା ଜାଣିଶୁଣି ଆମେ ସତର୍କ ସେଥିପ୍ରତି ସଚେତନ ନୋହୁଁ । ବର୍ତ୍ତମାନ ଯାହା ଘଟୁଛି ତାହା ଯଥେଷ୍ଟ ପୂର୍ବରୁ ମହର୍ଷି ଜଣାଇଛନ୍ତି, ପୁଣି ଆଗକୁ କ'ଣ ଘଟିବ ମଧ ସୂଚନା ଦେଇଛନ୍ତି । ତେବେ କ'ଣ ଘଟୁଛି ଏବଂ କ'ଣ ଘଟିବ ତାହାକୁ ଜାଣିବା ଉଚିତ । ତେବେ ତାହା ଦୈବକୃତ ନା ମନୁଷ୍ୟକୃତ ? ଭୂ-ସମ୍ପତ୍ତି ଅର୍ଜନ । ଯାହାର ଯେତେ ଭୂ-ସମ୍ପତ୍ତି ଅଛି, ସେ ସେତେ ନିଜକୁ ବଡ଼ ବୋଲି ଭାବେ ଏବଂ ଏହି ଭୂସମ୍ପତ୍ତି ହିଁ ପୃଥିବୀର ଅଂଶ ବିଶେଷ । ଏଥିପାଇଁ ପୂର୍ବ କାଳରେ ଯୁଦ୍ଧ ବିଭୀଷିକାର କରାଳ ରୂପ ବିଷୟରେ ଇତିହାସ କହେ । ତେବେ କିଏ ପୃଥିବୀକୁ ଜୟ କରିପାରିଛି ? ଏଭଳି ଯୁଦ୍ଧର ବିଭୀଷିକାର କାରଣ, ସେମାନଙ୍କ ମତରେ, 'ସେ ରାଜାମାନେ ପୂର୍ବେ ଜିଣି ସେ ଭୋଗ କରିବେ ଧରଣୀ । ଭୋଗ କରିବେ ପୁତ୍ର ନାତି-ଏମନ୍ତେ ମନେ ବିଚାରନ୍ତି । କଳିଯୁଗର ଯଥେଷ୍ଟ ପୂର୍ବରୁ ଏହିଭଳି ଚିନ୍ତା କରିଥିଲେ । କିନ୍ତୁ,

ଏହା ତୁଛା ଆସ୍ଫାଳନ । ଏବେ ମଧ ସେହି ନୀତି ଅନୁକରଣୀୟ । କିନ୍ତୁ 'ସେମାନେ ଛାଡ଼ି ମୋତେ ଗଲେ (ପୃଥିବୀକୁ) - ଏ ଲୋକେ ପ୍ରତ୍ୟକ୍ଷ ଦେଖିଲେ । ଏବେ ଏ କଳିଯୁଗ ପ୍ରାଣୀ ଅଳ୍ପ ଆୟୁଷ ପରିମାଣି । ଅଳପ ବୁଦ୍ଧି ଦୁଷ୍ଟମତି-ମୋତେ ଜିଣିତ ଲୋଡୁଛନ୍ତି । ମୋର ନିମନ୍ତେ ପିତା ପୁତ୍ର - ଭାତୃ ଆଦି ଜ୍ଞାତି ସହିତ, ଇଷ୍ଟମିତ୍ର ବନ୍ଧୁ ସ୍ୱଜନେ - ବାଦ ନିଗ୍ରହ ଚିନ୍ତିମନେ ।' ପୃଥିବୀ - ବସୁଧା - ମାତା ହସି ହସି ଥଟାରେ ଏ କଳିକାଳ ମଣିଷମାନଙ୍କୁ ଚାହିଁ କହେ, ଦେଖିଲ ତୁମେମାନେ କେଡ଼େ ନିର୍ବୋଧ । ଏଥିପାଇଁ କୋର୍ଟ-କଚେରୀ-ଥାନା-ତହସିଲ-ଗୁଣ୍ଡା ଆବଶ୍ୟକ ହେଉଛି କାରଣ ପୃଥିବୀକୁ ଜୟ କରିବା ପାଇଁ, ଭୋଗ କରିବା ପାଇଁ, ବରଂ ସେ ଲୋଭରୁ ନିବୃତ୍ତ ହୁଅ । ଯାହା ମାଟି ଉପରେ ଅଛି ତାହା ଭୋଗ କର । ଏହା ହିଁ ବସୁଧା ମାତାର ଦାନ । ସତ୍ୟ ଯୁଗ - ତ୍ରେତୟା ଯୁଗ - ଦ୍ୱାପର ଯୁଗର ଯେତେ ଯେତେ ରାଜା ଥିଲେ ଯଥା - ପୃଥି - ପୁରରବା - ଗାଧି- ନହୁଷାର୍ଜ୍ଜୁନ-ଭରତ - ମାନ୍ଧାତା-ଶ୍ରୀରାମ-ସଗର-ଖଟ୍ୱାଙ୍ଗ ଧୁନ୍ଧୁମାର-ରଘୁ -ତୃଣବିନ୍ଦୁ-ଯଯାତି-ଶାନ୍ତନୁ-ଭଗୀରଥ-ଜେ୍ୟାତି-ଗୟା-କୁବଳୟାଶ୍ୱ-ନୃଗ-କାକୁସ୍ଥ-ନୈଷଧ-ହିରଣ୍ୟକଶ୍ୟପୁ-ଶମ୍ବର-ହିରଣାକ୍ଷ । ଏତେ ରାଜା ଏବଂ ସେମାନଙ୍କର ବଂଶଧର ବୀର କେତେ କେତେ ଯୁଦ୍ଧ କରି ଚାଲିଗଲେ । କିଏ ପୃଥିବୀକୁ ଏ ବସୁଧା ମାତାକୁ ସଙ୍ଗରେ ନେଇଛନ୍ତି ? 'ଏମନ୍ତ ଭାଷି ମହୀ ହସି - ବିଷ୍ଣୁଲୀଳାକୁ ପରଶଂରି' । ଅନ୍ୟ ଯୁଗ ଅପେକ୍ଷା କଳି ପାଇଁ ନରସଂହାର ଅଧିକ । ପୁରାଣ ଓ ଇତିହାସ ପୃଷ୍ଠା ଗୁଡ଼ିକ ରକ୍ତ ରଞ୍ଜିତ ଯୁଦ୍ଧ ବ୍ୟତୀତ ଆଉ କ'ଣ ଅଛି ? ଭାରତ ଇତିହାସ ବୈଦେଶିକ ଶତ୍ରୁ ଆକ୍ରମଣ-ମୋଗଲ ଶାସନ-ବ୍ରିଟିଶ ଶାସନ-ପ୍ରଥମ ବିଶ୍ୱଯୁଦ୍ଧ-ଦ୍ୱିତୀୟ ବିଶ୍ୱଯୁଦ୍ଧ -ପୃଥିବୀ ଅପେକ୍ଷା କରିଛି ଏବଂ ଭୟଭୀତ ହୋଇ ଚାହିଁଛି ତୃତୀୟ ଯୁଦ୍ଧ ଯଦି ହୁଏ, ତାହା ହିଁ ପରମାଣୁ ଯୁଦ୍ଧ ଏବଂ ପୃଥିବୀ ସମ୍ପୂର୍ଣ୍ଣ ଧ୍ୱଂସ ପାଇଯାଇପାରେ । ଯଦି ଏହିଭଳି ପ୍ରକାରେ ମଣିଷ ଯୁଦ୍ଧଖୋର ନୀତି ଧାରଣ କରେ, ତେବେ ଚତୁର୍ଥ ବିଶ୍ୱଯୁଦ୍ଧ ହେବ ମୁଣ୍ଡା ମୁଣ୍ଡା ପଥର ଫିଙ୍ଗିବାରେ ଅର୍ଥାତ୍ ପୁନରାୟ ନୂଆ ପୃଥିବୀ ଆରମ୍ଭ ହେବ । ଦୁନିଆ ଏଭଳି ଦେଖିବାକୁ ଅପେକ୍ଷା କରିଛି 'ଯେ ମରିଗଲା ସେ ତରିଗଲା' ଭୂଖଣ୍ଡ ଆକ୍ରମଣ ଭୂସମ୍ପତ୍ତିର ଅଧିକାରୀ - ଜବରଦଖଲ ଇତ୍ୟାଦିର ଲୋଭ ପାଇଁ ଏ ଦଶା ଭୋଗିଥାନ୍ତି । ସତ୍ୟ ଯୁଗରେ ମନୁଷ୍ୟ ଏକ ଲକ୍ଷ ବର୍ଷ ବଞ୍ଚିବାର କାରଣ ଧର୍ମର ଆଚରଣ ଚାରିପାଦ ଥିଲା ଯଥା - ସତ୍ୟ - ତପସ୍ୟା - ଦୟା - ଦାନ । ସେ ଯୁଗରେ କେହି ମିଥ୍ୟାଚାରୀ ନଥିଲେ ।

ତପସ୍ୟା ମାର୍ଗରେ ଜ୍ଞାନ ଅର୍ଜନ ଦ୍ୱାରା ଅନ୍ଧକାରରୁ ଆଲୋକ ପଥର ପଥଚାରୀ ଥିଲା । ଦାନ କରୁଥିଲେ । ସେଥିପାଇଁ ସେମାନେ ଦୟାଶୀଳ ସନ୍ତୋଷୀ - ଧୀର - ଶାନ୍ତ - ତପସ୍ୱୀ - ଆତ୍ମାରାମ ଅର୍ଥାତ୍ ଆତ୍ମ ସନ୍ତୋଷ ଥିବା ଲୋକ ହିଁ ସ୍ଥିତପ୍ରଜ୍ଞ - ସମଦର୍ଶୀ ଅଥାର୍ତ୍ ସମସ୍ତଙ୍କୁ ସମାନ ବୋଲି ଭାବୁଥିଲେ । ସେମାନେ ସାଧୁ ଥିଲେ । ଚୌର୍ଯ୍ୟବୃତ୍ତି ନଥିଲା । ତ୍ରେତୟା ଯୁଗରେ ମନୁଷ୍ୟ ଦଶ ହଜାର ବର୍ଷ ବଞ୍ଚୁଥିଲା । କାରଣ ଧର୍ମର ଗୋଟିଏ ପାଦ କଟିଗଲା । ସତ୍ୟକୁ ବାଦ୍ ଦିଆଗଲା ଏବଂ ରହିଲା ବାକି ତିନି ପାଦ ଯଥା - କ୍ରିୟା, ନିଷ୍ଠା, ତପ । ସତ୍ୟ ସ୍ଥାନରେ ମିଥ୍ୟା, ହିଂସା, ଅସନ୍ତୋଷ ଆବିର୍ଭାବ ହେଲେ । ମନୁଷ୍ୟର ପରମାୟୁ ଦଶ ହଜାର ବର୍ଷ । ଦ୍ୱାପର ଯୁଗର ଆବିର୍ଭାବ ହେଲା । ଧର୍ମ ଦୁଇପାଦ କଟିଗଲା । କେବଳ ରହିଲା ଦୟା ଓ ଦାନ । ଦ୍ୱାପର ଯୁଗର ମନୁଷ୍ୟ ସତ୍ୟ ଏବଂ ତପସ୍ୟାକୁ ଛାଡ଼ିଲେ । ଫଳରେ ଯେଉଁ ଦୁଇପାଦ ଛାଡ଼ିଲେ ତାଙ୍କୁ ସ୍ଥାନ ଅଧିକାର କଲେ ହିଂସା - ଅସନ୍ତୋଷ - ବୈରୀ ଭାବ - ମିଥ୍ୟା । ମନୁଷ୍ୟର ଆୟୁଷ ମାତ୍ର ଏକ ହଜାର ବର୍ଷ ରହିଲା । କଳି ଯୁଗରେ ଧର୍ମର ଗୋଟିଏ ପାଦ ରହିଲା, ତାହା ହିଁ ଦାନ । ଏ ଯୁଗର ଲୋକମାନେ ନିର୍ଦ୍ଦୟ ଦୂରାଚାର - ଅଯଥାରେ ଶତ୍ରୁ ସୃଷ୍ଟି କରିବା - ଶରୀରର ଗଠନ ଅସୁନ୍ଦର - ବଡ଼ ଲୋଭୀ - ଶୁଦ୍ରଙ୍କ - ସଂଖ୍ୟା ବୃଦ୍ଧି - 'କଳି ପୀଡ଼ିତ ଗୁଣ ଦୋଷ - ଅଳପ ଦିନେ ଯିବେ ନାଶ ।' କଳିରେ ତମୋଗୁଣ ବୃଦ୍ଧି ହେତୁ ତାମସୀଙ୍କ ସଂଖ୍ୟା ବୃଦ୍ଧି । ତେଣୁ ମାୟା - ମିଥ୍ୟା ଅଧର୍ମ- ନିଦ୍ରା - ହିଂସା - ବିଷାଦ - ଦୁଃଖ - ଶୋକ - ଭୟ ତେଣୁ 'ଯହୁଁ ପ୍ରାଣୀ ଦର୍ପିତ ହୋନ୍ତି - ଅଳପ ଭୋଗେ ସେ ଜୀଅନ୍ତି ।' ଗର୍ବ - ଦମ୍ଭ - ଅହଂକାର - ଦର୍ପକୁ ଏ ବସୁଧା ସହ୍ୟ ନକରିବା ହେତୁ ସେମାନେ ଅଳ୍ପ ଆୟୁଷରେ ଏଠୁଁ ବିଦାୟ ନିଅନ୍ତି । ଅତଏବ ଏକଶତ କୋଟିଏ ବର୍ଷ ବା ବିଶାଶଏ ବର୍ଷ । କିନ୍ତୁ କଳି ଷଠା ଷାଠିଏରେ ମନୁଷ୍ୟର ଦୁର୍ବଳତା ଯୋଗ ପହଞ୍ଚେ । କେବଳ ସର୍ବଭାରତୀୟ ଚାକିରୀଆ ଓ ରାଜ୍ୟ ସରକାରଙ୍କ ଚାକିରୀଆଙ୍କୁ କଳି ଦୟା କରିଛନ୍ତି ଏବଂ ଦୟା କରିଛନ୍ତି ଶକ୍ତିଧାରୀମାନଙ୍କୁ । କଳି କାଳର ଲୋକେ ବହୁତ ଆହାର ଗ୍ରହଣ କରିବା ହେତୁ ବିଭିନ୍ନ ପ୍ରକାରର ରୋଗଗ୍ରସ୍ତ ହୁଅନ୍ତି । କାମପୀଡ଼ା ପାଇଁ ଏମାନେ ମୁଢ଼ମତି । ପ୍ରଚଳିତ ଯୁଗକୁ କଳିଯୁଗ ବୋଲି ନାମକରଣ କରାଯିବାରେ କାରଣ ହେଉଛି ମନୁଷ୍ୟ କର୍ମ - ଚରିତ୍ର - ସ୍ୱଭାବ - ବ୍ୟବହାର ଇତ୍ୟାଦି ପାଇଁ । ତେବେ ମନୁଷ୍ୟଗଣ ସାଧାରଣତଃ କି କି ପଥ ଧରିଥାନ୍ତି । ଧର୍ମର ତିନିପାଦ ନାହିଁ ଅର୍ଥାତ୍ ସତ୍ୟ - ତପସ୍ୟା - ଦୟା ନାହିଁ । କେବଳ ଦାନ ହିଁ ରହିଛି ।

ଏଠାରେ ମନୁଷ୍ୟ ସମାଜରେ ଯାହା ଯାହା ଘଟିଚାଲିଛି ତାହାର ପରିମାଣ ପଚସ୍ତରୀ ଭାଗ ପାପକର୍ମ ଦ୍ୱାରା ଆଚ୍ଛାଦିତ ଏବଂ ମାତ୍ର ପଚିଶି ଭାଗ ପୂଣ୍ୟ ଅର୍ଜନ କରିବାର ପଥ ପାଇଁ ଦାନ ହିଁ ଉଦ୍ଦିଷ୍ଟ । ହେଲେ ଦାନ କରୁଛି କିଏ ? ସେହି କଥା ପୃଥିବୀ ପରିହାସ କରିଛି । 'ସେ ରାଜାମାନେ ପୂର୍ବେ ଜିଣି - ମୁଁ ଭୋଗ କରିବି ଧରଣୀ - ଭୋଗ କରିବେ ପୁତ୍ର ନାତି - ଏମନ୍ତେ ମନେ ବିଚାରନ୍ତି ।' ବର୍ତ୍ତମାନ ମଧ ସେହି ଉପାୟରେ ସଂଚୟ ଚାଲିଛି । କିଏ ଦାନ କରୁଛି । କଥାରେ ଅଛି, ମୋତେ ନିଅଣ୍ଟ - ଗାଁରେ ବାଣ୍ଟ' । ଦାନ ଦେବେ କାହାକୁ ? ଯାହାର କିଛି ନାହିଁ, ଦ୍ୱାର ଦ୍ୱାର ବୁଲି ବଞ୍ଚିବାକୁ କିଛି ମାଗୁଛି, ତାକୁ ଦାନ କରିବା, କିନ୍ତୁ ଯଦି ସେ କର୍ମକୁଣ୍ଠି ହୋଇଥାଏ, ତେବେ ଅପାତ୍ରରେ ଦାନ କରିବାଟା ଯଥାର୍ଥ ନୁହେଁ କି ? ଅତଏବ ସତପାତ୍ରରେ ଦାନ କରିବାକୁ ପୁରାଣ ଶାସ୍ତ୍ର ନିର୍ଦ୍ଦେଶ କରେ । 'କଳିକାଳରେ ବଡ଼ କିଏ ? ଯେଉଁ ଜନର ଧନ ଥିବ - ସଂସାରେ ବଡ଼ ସେ ହୋଇବ । ସର୍ବଗୁଣ ତାଙ୍କର ପୁଣ - ଧର୍ମ ନ୍ୟାୟ ଯେ ବିଚାରଣ । ବଳବନ୍ତ ହୋଇବେ ସେହି - ତା' ବିନା ବଳବାନ ସର୍ବ ସର୍ବତ୍ର ସର୍ବଦା । ଯେହେତୁ ସେମାନେ ଧନୀକ, ସେମାନେ ଯେଉଁ ଧରଣର ନିଷ୍ପତ୍ତି ନେବେ, ତାକୁ ଅନ୍ୟମାନେ ଗ୍ରହଣ କରିବାକୁ ବାଧ୍ୟ । ରାଜତନ୍ତ୍ର ଶାସନରେ ତାହାର ପଦଚିହ୍ନର ଅଭାବ ନାହିଁ । ଶୋଷଣ, ମାରଣ ନୀତି ବଦଳରେ କେହି କେବେ ଧନୀ ହୋଇନପାରେ । ଚୋରି - ଠକାମି - ରାଜକୋଷରୁ ତୋଷାରପାତ - କିଳାପୋତାର ନାଲି ଆଖି - ଗୁଣ୍ଡାମି - ଖାଦ୍ୟଶସ୍ୟର କୃତ୍ରିମ ଅଭାବ ସୃଷ୍ଟି, ଏଗୁଡ଼ିକ ମନୁଷ୍ୟକୁ ସମାଜରେ ଉଚ୍ଚ ସ୍ଥାନ ଦିଏ । ରାଜନୀତିରେ କରାଣ୍ଡି ଗୁନ୍ଥି ବାଳିଆ ଧରିବା ନୀତି । ପ୍ରତିଦିନ ସମ୍ବାଦପତ୍ରରେ ଏହି ଧରଣର ଲୋକ କିପରି ବଡ଼ ହୋଇଛନ୍ତି ତାହା ପ୍ରକାଶ ପାଉଛି । କାରଣ କଳି ଯୁଗରେ ଧର୍ମ ମାତ୍ର ଏକ ପାଦ, ଅବଶିଷ୍ଟ ତିନି ପାଦ ଅଧର୍ମ ବା ପାପ । ଦାନୀ କାହାନ୍ତି ? ନିଜର ଶାରୀରିକ ପରିଶ୍ରମ ପାଇଁ ଯାହା ଅର୍ଥ ଉପାର୍ଜନ କରାଯାଏ, ତାହାହିଁ ପୂଣ୍ୟ ଅର୍ଜିତ ଧନ । ତାହା ହିଁ କଳିକାଳର ନୀତିକୁ ଅନୁସରଣ କରେ, ଅବଶିଷ୍ଟ ଗଛିତ ଧନ ହିଁ ପାପଧନ ଏବଂ ତାର ପ୍ରାୟଶ୍ଚିତ ବିଷୟରେ ଅବଧାରଣା କରାଯାଉଛି । ସେଥିପାଇଁ, 'ଇତିହାସ କେବେ ପ୍ରକୃତରେ ଶେଷ ବିଦାୟ ଜଣାଏ ନାହିଁ । ଇତିହାସ କହେ ପରେ ଦେଖାହେବ ।' ସେଥିପାଇଁ ମନବୋଧ ଚଉତିଶା କହେ, 'ଗଲେଣି ତୋ ସଙ୍ଗରେ ଯେତେକ ଜନ - ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନରେ' । ଅତଏବ, ' ଯାହାର ସତ୍ୟଗୁଣ ଥିବ- ତାହାକୁ କେହି ନମାନିବ ।' 'ଦର୍ଦ୍ଦୁର ରବ

ଶୁଣି ନୀରବ ପିକ, ମୁଢ଼ ସଭାରେ ଯଥା ମୁକ ପଣ୍ଡିତ ।' ଆଜିକାଲିର ନିମ୍ନରୁ ଉର୍ଦ୍ଧ୍ୱ ପର୍ଯ୍ୟନ୍ତ ଯେଉଁମାନେ ଶାସନଗାଦିରେ ବସିଛନ୍ତି, ସେମାନଙ୍କୁ କଳି କଳନା କରି କହେ ପଚିଶ ଭାଗ ଉପଯୁକ୍ତ ବ୍ୟକ୍ତି ଏବଂ ପଚସ୍ତରୀ ଭାଗ କଳିକାଳରେ ବଡ଼ ଅର୍ଥାତ୍ 'ଯେଉଁ ଜନର ଧନ ଥିବ - ସଂସାରେ ବଡ଼ ସେ ହୋଇବ,' ଏଠାରେ ବ୍ୟକ୍ତିତର ବିଚାର କରାଯାଇଛି ଧନରେ । ନଅଙ୍କ ଦୁର୍ଭିକ୍ଷ ସମୟରେ ଲୋକ ଖାଦ୍ୟଭାବରୁ ପୋକ ମାଛି ପରି ମଲେ କିନ୍ତୁ ସରକାରଙ୍କ ତରଫରୁ ରିଲିଫ୍ ବା ଛତର ଦିଆଗଲା ଲୋକେ ତାକୁ ଗ୍ରହଣ କଲେନାହିଁ । ବଡ଼ ବଡ଼ ଧନୀଲୋକେ ଖାଦ୍ୟ ପଦାର୍ଥ ବାଣ୍ଟିଲେ କେହି ଆସିଲେ ନାହିଁ । କିନ୍ତୁ ମଠ ମନ୍ଦିର ମାନଙ୍କରେ ମଠାଧିକାରୀ ନିଜର ଗଚ୍ଛିତ ଭଣ୍ଡାରରୁ ଦେଲେ ଲୋକେ ଖାଇଲେ । କାରଣ ସେମାନଙ୍କ ଧାରଣା ଥିଲା, ଛତର ବା ମାଗଣା ଅଥବା ବିନା ପରିଶ୍ରମରେ ଯାହା ମିଳେ ତାହା ହିଁ ପାପ । ଜାତି ଚାଲିଯିବ ପେଟ ପୁରିବ ନାହିଁ । କିନ୍ତୁ ଆଜିକାଲି ଲୋକେ ବିନା ପରିଶ୍ରମରେ ସବୁକିଛି ନେଉଛନ୍ତି ।

## କଳି ଯୁଗେ ଧନ୍ୟ ନରା ଯୋ ମୃତାଃ - ୨

ଏଠାରେ ଦୁଇଗୋଟି ସମୟ ଉପରେ ଆଲୋକପାତ କରାଯାଇଛି । ପ୍ରଥମେ ଆଗତ ଭବିଷ୍ୟ କଳିର ରୂପରେଖ କ'ଣ ହେବ, ଅର୍ଥାତ୍ ଦ୍ୱାପର ଯୁଗର ଆସନ୍ନ ଅବସାନ ସମୟ । ଦ୍ୱିତୀୟରେ କଳିର ପ୍ରବେଶ ଦିବସ ଠାରୁ ଯାହା ଆମେ ଦେଖୁଛନ୍ତି ବା ଭୋଗ କରୁଛେ । ତାହାହିଁ ସତ୍ୟ । ଯେପରି ପାଣିପାଗ କେନ୍ଦ୍ରର ପୂର୍ବାଭାସ ଏବଂ ଘଠିତ ପାଖ ଖବରଟି ଠିକ୍ ହୁଏ । ସେପରି ପୂଣ୍ୟଶ୍ଳୋକ ବ୍ୟସଦେବ କଳିର ଆଗତ ଭବିଷ୍ୟବାଣୀ । ଯାହା ଶୁଣାଇଛନ୍ତି, ତାହା ହିଁ ଆଲୋଚନାର ବିଷୟବସ୍ତୁ । ବଳବାନ କିଏ ? କେବଳ ଧନବାନ ଶକ୍ତିବାନ ବ୍ୟକ୍ତି । ଗତ ନିର୍ବାଚନ ପୂର୍ବର ନିର୍ବାଚନରେ ଭାଗ ନେଉଥିବା ପ୍ରାର୍ଥୀମାନଙ୍କ ସମ୍ପତ୍ତି ତାଲିକା ଖବର କାଗଜ ଶୁଣାଇଥିଲା । ପୁଣି କିଏ କିପରି ଶକ୍ତିଧର ହେଲେ ସେ କଥା କହିଥିଲା । ଅଙ୍ଗେ ବି ଲିଭାଉଛନ୍ତି । ତେବେ ବ୍ୟାସଦେବ ଏହି ବଳବାନ ବା ଧନବାନ ଅବା ଶକ୍ତିବାନ କିମ୍ବା ନ୍ୟାୟବାନଙ୍କ କଥା ବଖାଣି ନାହାନ୍ତି ପୁଣି ଦର୍ଶାଇଛନ୍ତି ସମାଜରେ କି କି ପରିବର୍ତ୍ତନ ଦେଖା ଦେବ ବା କି ପରିବର୍ତ୍ତନ ହେବ, ସେଗୁଡ଼ିକର ମଧ ଆଗାମୀ ସୂଚନା ପ୍ରଦାନ କରିଛନ୍ତି । ଯେହେତୁ ସେ ଥିଲେ ତ୍ରିକାଳଦର୍ଶୀ ବା ଈଶ୍ୱରଙ୍କର

ଅଂଶ ବିଶେଷ । ଏଭଳି ସୂଚନା ବର୍ତ୍ତମାନ ବିଜ୍ଞାନ ମଧ ଦିଏ । ଯଥା-ଯେତେଗୋଟି ବନ୍ୟାବିପ୍ଳାତ ଭୋଗ କରିଥାଏ ବା ସୁପର ସାଇକ୍ଲୋନ କିମ୍ବା ଫାଇଲିନ୍ ବ୍ୟାତ୍ୟାର ପ୍ରଭାବ ପଡିବା କଥାକୁ ଯଥେଷ୍ଟ ପୂର୍ବରୁ ଜଣାଇ ଦିଆ ଯାଇଥିଲେ ମଧ ସମୁଦ୍ର ଉପକୂଳବାସୀ ଏହାକୁ ସତ୍ୟ ବୋଲି ଭାବନ୍ତି ନାହିଁ । ପରିଶେଷରେ ଧନ, ଜୀବନ, ପଶୁ, ଖାଦ୍ୟ ଶସ୍ୟ ସବୁ କିଛିକୁ ହରାଇ ଥାଆନ୍ତି । ଏ ମଧ ଥାଏ ପାଣିପାଗର ଆଗତ ଭବିଷ୍ୟ ସୂଚନା । ବଳବନ୍ତ । ବିରାଟ ବପୁଧାରୀ, ଏହି ମାନେ ହିଁ ଧନୀ । ଏମାନେ ସର୍ବଗୁଣରେ ନିପୁଣ, ସେମାନେ ଯାହା ବଖାଣିବେ, ତାହା ହିଁ ଧର୍ମ । ସେମାନେ ଯାହା ନିଷ୍ପତ୍ତି ନେବେ ତାହାହିଁ ନ୍ୟାୟ, ତାହାହିଁ ବିଚାର । ପ୍ରଚଳିତ ଆଇନ କାହା ଉପରେ ନିର୍ଭର କରେ ? କଥାଟା ସତ, କିନ୍ତୁ କେହି ସାକ୍ଷୀ ନାହିଁ, ନିର୍ଦ୍ଦୋଶରେ ଖଲାସ । ଏହାକୁ କୁହାଯାଏ ମିଥ୍ୟା ସତ୍ୟପାଠ । ଘରେ ଘରେ ଭାଇ ଭାଇ ମଧରେ ଜମିବାଡି ପାଇଁ, ଆୟ ରୋଜଗାର ପାଇଁ ପିଲାପିଲି ଅମଳ ପାଇଁ, ନାରୀମାନଙ୍କ ମଧରେ ବିବାଦ-କଳି ଲାଗିବ । ଯୌଥ ପରିବାର ଭାଙ୍ଗି ଛୋଟ ଛୋଟ ପରିବାରରେ ପରିଣତ ହେବ । ହିଂସା-ରାଗ-କ୍ରୋଧ-ଈର୍ଷା ଫଳରେ ପରିବାରରେ ଅଶାନ୍ତି ବ୍ୟାପିବ । ଗୃହକର୍ତ୍ତା ନିରବ ଦ୍ରଷ୍ଟା ହେବେ । ବାହ୍ୟଶତ୍ରୁ ଜନମିତ୍ରତା ସ୍ଥାପନ କରି ଖେଳଟି ଦେଖିବେ ଓ ଫାଇଦା ଉଠାଇବେ । ବୈବାହିକ ସମ୍ବନ୍ଧ ଯେ କନ୍ୟା ଯେ ବର ବରିବ ସେ ଇଛା ସୁଖେ ବିଭା ହେବ । ଯା ମନ ଯାହାକୁ ଭଜିବ-ସେ କନ୍ୟା ତାକୁ ବିଭା ହେବ । ଏହା ଭାରତୀୟ ସଂସ୍କୃତି ବିରୋଧି କାର୍ଯ୍ୟକ୍ରମ । ଆଜିକାଲି ଏଥିପାଇଁ ସମ୍ବାଦପତ୍ର ପୃଷ୍ଠା ମଣ୍ଡନ କରେ ତାହା କେବଳ ବ୍ୟଭିଚାରଗ୍ରସ୍ତ କାର୍ଯ୍ୟକ୍ରମ ଅପସଂସ୍କୃତି । ଦୂରଦର୍ଶନରେ ଖବର କାଗଜରେ ପତ୍ରପତ୍ରିକାରେ ଜିନିଷପତ୍ର ଖୋଳରେ କାନ୍ଥବାଡରେ ଅଙ୍ଗ ପ୍ରତ୍ୟଙ୍ଗ ପ୍ରଦର୍ଶିତ ଯୁବତୀଙ୍କ ଛବି, ମୋର ଅଛି ଦେଖାଇଲେ କ୍ଷତି କ'ଣ ? ଅନ୍ୟମାନେ ନ ଦେଖିଲେ ଲାଭ କ'ଣ ? ଆଗତ ଭବିଷ୍ୟ ମାଳିକା ପୁଣି କହେ, ଲୋକେ ହେବେ କପଟୀ । ସେମାନଙ୍କ ବ୍ୟବହାର, କଥାବାର୍ତ୍ତା-ଧର୍ମ-ଆଚାର-ଲୋକାଚାର, ସବୁ କ୍ଷେତ୍ରରେ ଛଳନା, ଏ ପ୍ରତାରଣାପୂର୍ଣ୍ଣ ମାୟା । ସର୍ବମିଥ୍ୟା ଏବଂ ଗର୍ବ ଓ ପାଷାଣ୍ଡଭାବ । କାରଣ କ'ଣ ? ଧର୍ମ ତିନିପାଦ ହରାଇଛି । ସଭାସମିତି ମାନଙ୍କରେ ବାବଦୁକଙ୍କ ଭାଷଣବାଜୀ, ଏମାନଙ୍କୁ ନିମନ୍ତ୍ରଣ ନକଲେ ଅନୁଷ୍ଠାନ ଅଚଳ । ସ୍ତ୍ରୀ ଏ ସ୍ତ୍ରୀଙ୍କୁ ରମିବେ-ପୁରୁଷେ ପୁରୁଷେ ଭାବିବେ । ଆଜିକାଲି ଯେଉଁ ସମଲିଙ୍ଗୀଙ୍କ ରତିକ୍ରୀଡା ପାଇଁ ସୁପ୍ରିମକୋର୍ଟ ଆଦେଶ ଦେଲେ ତାହା କେଉଁମାନଙ୍କ ସପକ୍ଷରେ

ଗଲା ? ମୁଖେ ମୁଖେ କାକୁସ୍ଥ ରତି ଏମନ୍ତ ହୋଇବ ପ୍ରକୃତି। ଏଥିରେ ସତୀତ୍ୱ ନଷ୍ଟ ହୁଏ ନାହିଁ। କେବଳ ରୁଚି ଅନୁସାରେ ରତିଯେ ସ୍ୱୀରୀ ପୁରୁଷରେ, କଳିକାଳରେ ସବୁ ଚଳେ। କ୍ରୀଡା ବିହାର ଜାତିହୀନେ କରିବେ ଯେ ଅଭିଗମନେ, ଲିଙ୍ଗ ଭେଦରେ ପୁରୁଷ-ନାରୀ ଅସମାନର ପ୍ରଶ୍ନ ଉଠୁ ନାହିଁ। ଜାତିର ଆବଶ୍ୟକତା କ'ଣ ଦରକାର, କେବଳ ପାରିବା ଦକ୍ଷତା ହିଁ ସୁଖ ଏବଂ ଗ୍ରହଣୀୟ। ବେଶ୍ୟାକୁ ପାଇ ନିଜ ନାରୀ- ଛାଡି ତା ସଙ୍ଗେ କ୍ରୀଡା କରି, ବର୍ତ୍ତମାନ ବହୁତ ବଡ଼ ବଡ଼ ଉଚ୍ଚ ସ୍ଥାନର ଅଧିକାରୀଙ୍କ ଠୁଁ ଝୁମ୍ପୁଡି ବାସୀଙ୍କ କଥା ଖବର କାଗଜ କହେ ଏବଂ ମହିଳା ଥାନା ଏହିଭଳି ଖବର ପ୍ରଚାର କରେ। ଜଣେ ବିବାହିତା ନାରୀ ଏବଂ ଅନ୍ୟଜଣେ ରକ୍ଷିତା ନାରୀ। ଏ କଥା ବ୍ୟାସକବି ଫକୀରମୋହନ ସେନାପତିଙ୍କ ଗଳ୍ପ 'ପେଟେଣ୍ଟ ମେଡିସିନ୍' ଏଭଳି ଦୁଇ ନାରୀଙ୍କ ନାମକରଣ କରେ। ଜଣେ ସୁଲୋଚନା ଏବେ ଅନ୍ୟଜଣେ ଆସମାନ ତାରା। ସୁଲୋଚନାମାନେ ଡରିବାରୁ ଆସମାନ ତାରାଗଣଙ୍କ ଏବଂ ପ୍ରାଦୁର୍ଭାବ ବଢୁଛି। ଠିକ୍ ରୋଗ ପାଇଁ ଠିକ୍ ଔଷଧ ଦେଲେ ଖୁବ୍ ଶୀଘ୍ର କଳି ଚାଲିଯିବ ଏବଂ ସତ୍ୟଯୁଗର ଉଷାର ଆଲୋକ ଉଦ୍‌ଭାସିତ ହେବ। ଫଳାଫଳ କ'ଣ ହେବ, 'ଜାତି ଭେଦକୁ ଭୟ ନାହିଁ/ଦୀପେ ପତଙ୍ଗ ପ୍ରାୟ ହୋଇ'।

## କଳି ଯୁଗେ ଧନ୍ୟ ନରା ଯୋ ମୃତାଃ – ୩

ବିପ୍ର କୁମାର୍ଗ ଗତାଃ ଦ୍ୱିଜାଶ୍ଚ ଲୋଭିତା, ବ୍ରାହ୍ମଣମାନଙ୍କ ପାଇଁ ଏକ ନିର୍ଦ୍ଦେଶନାମା ବେଦ ନିର୍ଦ୍ଦେଶ ଦେଇଛି। ବ୍ରହ୍ମରୁ ବ୍ରହ୍ମା-ବ୍ରହ୍ମାଙ୍କ ଠାରୁ ବ୍ରାହ୍ମଣ ଉତ୍ପତ୍ତି- ଆମେ ତାଙ୍କୁ ପୁରୋହିତ ବୋଲି କହୁ। କାରଣ ସେମାନଙ୍କ ଦ୍ୱାରା ପୁରର ହିତକାର୍ଯ୍ୟ ସମାପନ ହୁଏ। ବ୍ରହ୍ମତତ୍ତ୍ୱ ଗୀତା ଭାଗବତ ପରି ଅଷ୍ଟାଦଶ ପୁରାଣରେ ଶ୍ରେଷ୍ଠସ୍ଥାନ ବ୍ରାହ୍ମଣଙ୍କୁ ତତ୍କାଳୀନ ସମାଜ ଦେଇଛି। କିନ୍ତୁ ସେମାନେ ନିଜ କର୍ମରୁ ଚ୍ୟୁତହୋଇ କେବଳ ନାମକୁ ମାତ୍ର ବ୍ରାହ୍ମଣ ବୋଲାଇବେ। ତା' ଛାଡି ଅକର୍ମେ ବଢିବେ-ଶୁଦ୍ର ଗର୍ଭରେ ରେତ ଦେବେ। କରିବେ ଶୁଦ୍ରଙ୍କ ବିଧାନ ନ କରି ବେଦର ବଚନ। ବର୍ତ୍ତମାନ ଯେଉଁମାନଙ୍କୁ ଆଜିର ସମାଜ ସାଧୁ-ସନ୍ଥ-ବାବା-ଆଚାର୍ଯ୍ୟ- ଋଷି ବୋଲି ପୂଜା କରେ, ସେମାନେ ପଥଭ୍ରଷ୍ଟ। ସୁନ୍ଦରୀ ଯୁବତୀମାନଙ୍କୁ ବଶୀଭୂତ କରାଇ ରତିକ୍ରୀଡାରେ ମଗ୍ନ। କ୍ରମଶଃ ବ୍ରାହ୍ମଣମାନେ ନିଜ ସ୍ଥାନ ପାଇବେ

ଏବଂ ଶୁଦ୍ରାଦି- ବ୍ରହ୍ମଚାରୀ-ସନ୍ୟାସୀ-ବୈଷ୍ଣବ ଉଚ୍ଚ ସ୍ଥାନରେ ଅଧିଷ୍ଟ ହେବେ । ଏହା ହିଁ କଳିର ପ୍ରଭାବ । ପୂର୍ବରୁ କଳି ପ୍ରବେଶ ସମୟରେ ଧର୍ମ ତିନିପାଦ ହରାଇଛି ଏକପାଦ ଅର୍ଥାତ୍ ଦାନଧର୍ମ କରିବେ ଯଶ ଅର୍ଥେ ଶାସ୍ତ୍ରକୁ ମଣିବେ ଅଦର୍ଥେ । ଦାନ ଅର୍ଥାତ୍ ବଡ଼ବଡ଼ ଭୋଜି । ବିବାହକାଳୀନ ଭୋଜି-ବ୍ରହ୍ମଚାରୀ ଭୋଜି-କାଙ୍ଗାଳ ଭୋଜନ ଲୋକେ କରି ଥାଆନ୍ତି, କାହିଁକି ? କେବଳ ନାମ ଯଶ ପାଇଁ । ନିର୍ବାଚନ ସମୟ ଆସିଲେ ନେତାମାନେ ପୂର୍ବରୁ ରଖିଥିବା ଚୋରା ଗଚ୍ଛିତ ଧନରେ ଭୋଟ ଲାଳସାରେ ଅଜସ୍ର ଧନ ଖର୍ଚ୍ଚ କରନ୍ତି । ଛୁଞ୍ଚିଦାନ ନେହୀ ଚୋରୀ ପାଇଁ । ଏହାଦାନ ନୁହେଁ । ଏହା ପୂଣ୍ୟ ନୁହେଁ । କେବଳ ପାପ ଅର୍ଜନ ପାଇଁ ଉଦ୍ଦିଷ୍ଟ । ଏମନ୍ତ ହୋଇ ଯେତେବେଳେ ପାପ ଆଚ୍ଛାଦିକ ଶୟବେ । ସଂସାର ପାପପୂର୍ଣ୍ଣ । ଫଳରେ ଦୁଷ୍ଟଜନ ସୃଷ୍ଟିହେବେ । ଗୁଣ୍ଡା, ଡକାୟତ, ଚୋର, ଲାଞ୍ଚୁଆ, ମଦୁଆ, ଅଳସୁଆ, ମାଗିଖିଆ, ଛଡେଇଖିଆ, ଜବରଦସ୍ତିଆ, ଛତରଖିଆ ଏମାନଙ୍କ ସଂଖ୍ୟା ଶତକଡା ପଚସ୍ତରୀ ଭାଗରୁ ଅଧିକ ହେଲେ ଘୋରକଳିର ସମୟ । ଏମାନେ ଦୁର୍ବୃତ୍ତ ବୋଲାଇବେ-ବିକଳ କେହି ନଶୁଣିବେ । ପର ଦ୍ୱାରା ଧନ ହରିବେ-ଶୋକ ବିପଦରେ ଦଣ୍ଡିବେ । ବର୍ତ୍ତମାନ ନାରୀ ନିର୍ଯାତନା-ଦୁଷ୍କର୍ମ-ଜବରଦସ୍ତ-ନାବାଳିକା-ମାତୃସମ ନାରୀମାନଙ୍କ ପ୍ରତି ଯେଉଁ ଧରଣର କୁକର୍ମ ଜନିତ ଘଟଣା ପ୍ରତ୍ୟେକଦିନ ସମ୍ବାଦପତ୍ର ପରିବେଷଣ କରେ, ତେବେ ସମୟ ନିର୍ଦ୍ଧାରଣରେ କ'ଣ ଘୋର କଳିର ମୁହାଣରେ ନୌଭେଳା ନୁହେଁକି ? ଫଳରେ ବର୍ଷା ହେବନି-ଦୁର୍ଭିକ୍ଷ ହେବ - ବିଭିନ୍ନ ରୋଗରେ ପୀଡିତ ହେବେ-ମୃତ୍ୟୁହାର ବୃଦ୍ଧି-ରାଜା-ପ୍ରଜାଙ୍କ ସମ୍ପର୍କ ଯମ ଓ କିଙ୍କର ସମ । ଶୀତ-ବାତ-ଖରୀ-ବରଷା-ପୀଡିତ ବ୍ୟାଧି କ୍ଷୁଧା ତୃଷା ଚିନ୍ତା ସନ୍ତପ ଜ୍ୱର ଦୁଃଖୀ ପ୍ରଜାଏ ହୋଇବେ ନିର୍ମାଖି । କାରଣ ସକଳ ଧର୍ମ ନାଶ ଯିବେ-ପାଷାଣ୍ଡ ବହୁତ ହୋଇବେ । ତେବେ ପାଷାଣ୍ଡ କିଏ ? ଧର୍ମ ଚାରିପାଦ-ସତ୍ୟ-ତପସ୍ୟା-ଦୟା-ଦାନ । କିନ୍ତୁ କଳିରେ କେବଳ ଦାନ । ସତ୍ୟ ୨୫ ଭାଗ-ତପସ୍ୟା ୨୫ ଭାଗ - ଦୟା ୨୫ ଭାଗ- ଦାନ ୨୫ ଭାଗ । ଯେତେବେଳେ ଜଣେ ପୂର୍ଣ୍ଣ ବୟସ୍କ ସମସ୍ତ ଭୁଲିଯାଏ ଏହା ବିପରୀତ କାର୍ଯ୍ୟ କରି କରି ଚାଲେ ସେହି ମନୁଷ୍ୟକୁ ପାଷାଣ୍ଡ ବୋଲି କୁହାଯାଏ । ଏହି ଶ୍ରେଣୀଭୁକ୍ତ ମଣିଷଙ୍କ ସଂଖ୍ୟା ଅନ୍ୟମାନଙ୍କ ତୁଳନାରେ ବଢି ବଢି ଚାଲିଛି । ୧୯୫୨ ମସିହାରେ ନିର୍ବାଚନ ଠାରୁ ୨୦୧୪ ମସିହା ନିର୍ବାଚନ ପର୍ଯ୍ୟନ୍ତ ନିର୍ବାଚନ ପଦ୍ଧତିକୁ ଅନୁସରଣ କଲେ ଜଣାଯାଏ ପାଷାଣ୍ଡମାନଙ୍କ ସଂଖ୍ୟା ଦ୍ରୁତଗତିରେ ବଢିଛି । କାରଣ କ'ଣ ? ରାଜ୍ୟଏ

(ଶାସନ ଗୋଷ୍ଠୀ) ଦସ୍ୟୁପରି ହେବେ-ପ୍ରଜାଏ ଏମନ୍ତ କରିବେ । ଚୌର୍ଯ୍ୟ-ହିଂସା-ମିଥ୍ୟା-ବିବାଦ-ବିଶ୍ୱାସଘାତ ବୃତ୍ତିଛେଦ । ଯେତେପ୍ରକାର ସାମାଜିକ ବିଶୃଙ୍ଖଳା ଦେଖାଯାଉଛି, ପ୍ରତ୍ୟେକ କ୍ଷେତ୍ରରେ ଛୋଟ-ବଡ଼ ରାଜନେତାମାନଙ୍କ ପରୋକ୍ଷ ହାତ ପ୍ରଚ୍ଛନ୍ନ ଭାବରେ ଇଙ୍ଗିତ ଦେବାର ପ୍ରମାଣ ମିଳେ । ବଳିଷ୍ଠ ହୋଇବେକ ସେହି-କୃପଣ ବୋଲାଇବେ ସେହି । ଏମାନେ ଦୁର୍ବୃତ୍ତ ହୋଇବେ ନିର୍ଦ୍ଦୟ ଭାବକୁ ବହିବେ । ପ୍ରଜାମାନଙ୍କୁ କଷ୍ଟଦେବେ । ଅଧର୍ମ ବଳ ଗୁଣ ଭାବେ । ସର୍ବସ୍ୱ ପ୍ରଜାଙ୍କର ନେବେ ବିକଳ କେହୁ ନ ଶୁଣିବେ । ଏସବୁ ଘଟଣା ଆଗାମୀ ଦିନମାନଙ୍କରେ ଘଟିବ ବୋଲି ପାଞ୍ଚହଜାର ବର୍ଷ ପୂର୍ବେ ଆଗତ ଭବିଷ୍ୟ ମାଳିକା ଯାହା ବଖାଣିଛି, ଏହା କ'ଣ ଭୁଲ୍ । ତେବେ, ଯଦି ଏଭଳି ଘଟଣା ଘଟୁଛି, ତେବେ ଆମେ କାହିଁକି ସତର୍କ ହେବାକୁ ପଦକ୍ଷେପ ନନେଉଛୁ ? ସର୍ବ ଆଶ୍ରମୀମାନେ ପୁଣ୍ୟ-କରିବେ ଗୃହ ଆଚରଣ । ଆଶ୍ରମ ଜୀବନ ଏକ ସନ୍ୟାସ ଜୀବନ । ସଂସାରିକ ମୋହ ମାୟା ଠାରୁ ଦୂରେଇ ଆସି ଜପ-ତପ ମାଧ୍ୟମରେ ଭଗବାନଙ୍କୁ ଦର୍ଶନ କରିବା ପାଇଁ ପିତା-ମାତା-ସ୍ତ୍ରୀ-ପିଲାଛୁଆ-ଜ୍ଞାତି-କୁଟୁମ୍ବଙ୍କ ଠାରୁ ଦୂରରେ ରହିବାକୁ ବିଧି ବ୍ୟବସ୍ଥା । କିନ୍ତୁ ବର୍ତ୍ତମାନ ଯେତେ ଗୋଟି ଆଶ୍ରମ ଦେଖିବେ, ସେମାନେ ଅସଂଖ୍ୟ ମାତା-ଚେଲା-ଗାଈଗୋରୁ-ଛେଳିମେଣ୍ଢା-ଠକଭକ୍ତ-କୋଟି କୋଟି ଟଙ୍କାର ବ୍ୟାଙ୍କ ଜମା । ଏ କ'ଣ ଆଶ୍ରମ ନା ଭଣ୍ଡବାବାଶ୍ରମ । କେବଳ ସାଧାରଣ ଲୋକଙ୍କୁ ଭୁଆଁ ବୁଲାଇ ଲୁଣ୍ଠନ କରିବା ଉପାୟ ।ଭୋଗ ବିଳାସରେ ମାତି ରାଜନୈତିକ ନେତାମାନଙ୍କର ବଡ଼ବଡ଼ ପ୍ରଚାରକ । ହେ ଆଶ୍ରମବାସୀଗଣ ବରଂ ଫେରି ଯାଆନ୍ତୁ ନିଜ ସଂସାରକୁ, ସମାଜ ଆଦର କରିବ, ନଚେତ୍ ଜଗତେ କେବଳ ଜନେ ହସିବେ ଏହି ତହିଁ ତା'ର ଫଳ । ଧନ୍ୟାଦି ସର୍ବ ଶସ୍ୟମାନ-ସକଳ ହେବେ ରସହୀନ । ବାସ୍ତବ କଥା, ଆମ ପିଲାବେଳେ ବାଡି ବାଇଗଣ ଭେଣ୍ଡି-ଜହ୍ନି-କାକୁଡି-ଖଡା-ଲେଉଠିଆ ଇତ୍ୟାଦି ଖାଇଛୁ । ଧାନ ପୋଟିଆ-ଧଳା ମୁଗଡାଲି ଯେଉଁ ସ୍ୱାଦ ଲାଗେ ଏବେ ପ୍ରତିଦିନ ହାଟବଜାରରୁ ପରିବାରେ କ'ଣ ଲାଗୁଛି ? ଚଷୁ ଚୋବାଇବା ଭଳି, କାରଣ ମାଟିରେ ଆଉ ରସ ନାହିଁ । ମା'ର ସ୍ତନ କ୍ଷୀର ଏବଂ ବୁଢ଼ୀମାଆର ଶୁକୁଟି ସ୍ତନକୁ ଆଶ୍ୱାଦନା କଲେ ଯାହା ଲାଗେ ।

# କଳି ଯୁଗେ ଧନ୍ୟ ନରା ଯେ। ମୃତାଃ - ୪

ନିଷ୍ଫଳବୃକ୍ଷ ଶମୀତୁଲ୍ୟ କ୍ଷୀଣ ଔଷଧ ଫଳମୂଳ। ଆଉ ଔଷଧ ବୃକ୍ଷ ନାହିଁ। ଯେଉଁ ହାରରେ ଯେତେବେଳେ ବୃକ୍ଷଗଛରେ ଫଳ ଫଳୁଥିଲା, ଏବେ ଗଜାଗଛ ସେହିଭଳି ସେତିକି ପରିମାଣର ସୁସ୍ୱାଦଫଳ ଦେବାକୁ ଅକ୍ଷମ। କାରଣ ସମସ୍ତେ ବୁଝିଛନ୍ତି। ମେଘ ଯେ ଗର୍ଜନ କରିବେ- ବିଦ୍ୟୁତ ମାନେ ଆଚ୍ଛାଦିବେ। ବରଷା କିଞ୍ଚିତ କରିବ-ପବନ ମେଘ ଉଡିଯିବ। ଫିରିଫିରି ବରଷା କରି-ପ୍ରଜା ଚାଷ କରି ନପାରି। ଘରମାନ ଶୂନ୍ୟ ହୋଇବେ-ପ୍ରାଣୀଏ ନିର୍ଦ୍ଧନେ ବଞ୍ଚିବେ। ଚାରିଗୋଟି ମେଘ ଆବର୍ତ୍ତକ-ସମ୍ବର୍ତ୍ତକ-ଦ୍ରୋଣ-ପୁଷ୍କର ଏହି ମେଘ ଗୁଡିକର ନାମାନୁସାରେ ଗୁଣଗୁଡିକ ଭିନ୍ନ ଭିନ୍ନ। ଏହାକୁ ପାଳକ ବୋଲି ପଞ୍ଜିକାରମାନେ ମତ୍ ଦିଅନ୍ତି। ଆମେ ଜଳଚକ୍ର ବିଷୟରେ ଜାଣିଛନ୍ତି। ସୂର୍ଯ୍ୟକିରଣ ଦ୍ୱାରା ସମୁଦ୍ରଜଳ ବାଷ୍ପହୋଇ ମେଘରେ ପରିଣତ ହୁଏ ଏବଂ ଶୀତଳିକରଣ ଦ୍ୱାରା ପୁଣି ଜଳରେ ପରିଣତ ହୋଇ ସମୁଦ୍ରରେ, ପାହାଡ଼ରେ ସ୍ଥଳଭାଗରେ ବୃଷ୍ଟି କରେ। ଏହାର ନାମ ଜଳଚକ୍ର। କିନ୍ତୁ ଇନ୍ଦ୍ରରାଜା ନିର୍ଦ୍ଦୟ ହୋଇ ଆବଶ୍ୟକ ମୁତାବକ ସ୍ଥଳଭାଗରେ ବୃଷ୍ଟି କରିବେ ନାହିଁ। ଯଦି କରିବେ ବହୁଜଳ ବୃଷ୍ଟି ନଚେତ ଅନାବୃଷ୍ଟି। ହାତରେ ମାରିବେ ନଚେତ ଭାତରେ ମାରିବେ। ଜଳ ଗହଳେ ସୃଷ୍ଟି ନାଶ ନଚେତ ଜଳ ବିହୁନେ ସୃଷ୍ଟି ନାଶ। ତେଣୁ ମେଘ ଗର୍ଜନ କରିବେ ବିଜୁଳି ଚଡଚଡି ମାରିବେ- ଦୁର୍ଭାଗ୍ୟ ପବନ ମେଘକୁ ଉଡାଇନେବ। ଫିରିଫିରି ବରଷା ହେଲେ ଚାଷ ହେବ କିପରି ? ଆମ ପିଲା ସମୟରେ ଦେଖିଛୁ ଝଡ଼ ବରଷା ପ୍ରାୟ ଏକାଦି କ୍ରମେ ପଚିଶି ଦିନର ବୃଷ୍ଟି। ସୂର୍ଯ୍ୟ ଦର୍ଶନ ନାସ୍ତି। ଚାଷପାଇଁ ଚାଷୀର ଭାଷାରେ ଇନ୍ଦ୍ର ଧାନକିଆରୀରେ ଦୁଗ୍ଧ ଢାଳୁଛି। କିନ୍ତୁ ଆଜି ଓମ୍‌ଫେଡ୍' ଢାଳୁଛି। ପ୍ରଚୁର ଘାସ ଜମିରେ ହୁଏ, ଗୋଧନପଲ ଘାସ ଖାଇ ପ୍ରଚୁର କ୍ଷୀର ଦିଅନ୍ତି। କିନ୍ତୁ ଚୁନି-ଚୋକଡ- ପଲିଥିନ୍-କାଗଜ ଖାଇ ଯାହା ଦିଅନ୍ତି ସେଥିରେ ଗଉଡ ମିଶାଏ ଅଧେପାଣି ପୁଣି ଶୁଖିଲା ପାଉଡର। ପିଲାଖାଉଛନ୍ତି ଅମୁଲ୍ ସ୍ପ୍ରେ। ଶକ୍ତିଶାଳୀ ଖାଦ୍ୟ ? ଫଳ ସମୟ ଓ ଅମଳ ଦ୍ୱାରା ଧାନ ରଖାଯାଏ ବସ୍ତା ବସ୍ତା ଭାଡି ଉପରେ-ଅମାରରେ-ମରେଙ୍ଗରେ ପୁଣି ଖଣିରେ। କିନ୍ତୁ ଆଜି ବି.ପି.ଏଲ୍ ନଚେତ ଅନ୍ନପୂର୍ଣ୍ଣା ଯୋଜନାରେ। ଆଉ ଚାଷ ନାହିଁ କି ଚାଷୀ ନାହାନ୍ତି। ତେଣୁ ଖାଦ୍ୟପଦାର୍ଥ ସଞ୍ଚୟ ଅଭାବରୁ, ଘରମାନ ଶୂନ୍ୟ ହୋଇବେ ପ୍ରାଣୀଏ ନିର୍ଦ୍ଧନେ ବଞ୍ଚିବେ। ଫଳରେ ଚୋରୀ-ଡକାୟତୀ- କିଲାପୋଡାଇ-

ଲାଞ୍ଚ-ମିଛ-ଛଡାଇନେବା-ବ୍ୟାଙ୍କ ଲୁଟ୍-ସରକାରୀ ଧନ ତୋଷରପାତ କରିବାକୁ ବାଧ ହେବେ । 'ଏ' ଠୁ 'ଜେଡ୍' ପର୍ଯ୍ୟନ୍ତ ସମସ୍ତେ । ଆଗତ ଭବିଷ୍ୟ ମାଳିକା ପ୍ରାୟ ପାଞ୍ଚ ହଜାର ବର୍ଷ ପୂର୍ବରୁ ଏକଥା ମଧ କହିଛି କୁଳସ୍ତ୍ରୀ ଅନ୍ୟାୟ କରିବେ-ପର ପୁରୁଷେ ମନଦେବେ । କୁଳଧର୍ମକୁ ନ ରଖିବେ-ବର୍ଣ୍ଣଭେଦକୁ ସେ ଛାଡିବେ । ବୁଭୁକ୍ଷିତାନାଂ କିଂ ନ କରୋତି ପାପଂ । ଦୁଇଟା ପାଟିକୁ ଯେ ସନ୍ତୁଷ୍ଟ କରିପାରେ, ସେ ଗୃହର ନାହିଁ, ଯଦି ଅସନ୍ତୁଷ୍ଟ ହୁଅନ୍ତି, ପରପୁରୁଷ ବିବାହିତ ଅବା ଅବିବାହିତ ଠାରୁ ବିପିଏଲ କାର୍ଡ ଦେଖାଇବେ । ଏହିମାନଙ୍କ ପାଇଁ ସମୟ ନିଷ୍ଠୁରତା ପ୍ରକାଶ କରେ । ଯଦି ଗର୍ଭଧାରଣ କଲେ, ଗୋଟିଏ ବର୍ଣ୍ଣଶଙ୍କରର ମାଆ ହେବେ । କିନ୍ତୁ କେଉଁ ପୁରୁଷ ଛୁଆଟିର ପିତା ହେବ ? ବାର୍ଦ୍ଧକ୍ୟ ସମୟରେ ସେହିପିତା ପୁଣି ପିତା ଲାଗିବାର ଜରାଶ୍ରମ ନୁହେଁ ଜରା ଜବରରେ ଆଶ୍ରୟ ନେବେ । ଗୋଟିଏ ସଂସ୍ଥା ଅଛି, ଜାତି-ଜାତକ-ଯୌତୁକ-କୁଳ-ଧର୍ମ-ଗୋତ୍ର, ସମସ୍ତଙ୍କୁ ବାଦ୍ ଦେଖ ପୁଅ-ଝିଅଙ୍କ ମଧରେ ବିବାହ ବନ୍ଧନ କରନ୍ତି । ଏହାକୁ ସଂସ୍କୃତି ଘୃଣାକରେ । କିନ୍ତୁ ଅଭାବୀ-କ୍ଷୁଧାର୍ତ୍ତୀ-ତୃଷାର୍ଥୀ ଦ୍ୱୟଙ୍କ ପକ୍ଷରେ ଅସମ୍ଭବ । ବର୍ତ୍ତମାନ ସୁଖ ପାଇଁ ବିମୋହିତ କିନ୍ତୁ ଭାଗ୍ୟବିଧାତା ସେମାନଙ୍କର ଭବିଷ୍ୟତ ପାଇଁ କିଛି ମଣନ୍ତି ନାହିଁ । ଏଥିପାଇଁ ଏ ଯୁଗ ଯେତେ ଲୋକମାନେ ଦୂରାଚାର ନିର୍ଦ୍ଦୟମନେ । ଅକାରଣେ କରି ବଲର-ଅସୁନ୍ଦର ହୁଏ ଶରୀର । ଅର୍ଥାତ୍ ଏହାର ସର୍ବଶେଷ ଫଳ ରୋଗ ହିଁ ମୂଳ କାରଣ । ତମୋ ଗୁଣ-ସାତ୍ତ୍ୱିକ ଗୁଣ । ପ୍ରତ୍ୟେକ ମନୁଷ୍ୟ କୌଣସି ନା କୌଣସି ଗୁଣକୁ ବହନ କରେ । ସତ୍ୟଯୁଗର ମନୁଷ୍ୟ ଚାରିପାଦ ଧର୍ମ ବହନ କରେ ଯଥା-ସତ୍ୟ-ତପସ୍ୟା-ଦୟାଦାନ । ଏମାନେ ସାତ୍ତ୍ୱିକ ଗୁଣଧାରୀ । ସତ୍ୟ ଯୁଗପରେ ଆସେ ତ୍ରେତୟାଯୁଗ ଏଠାରେ ଧର୍ମ ତିନିପାଦ । ସତ୍ୟସ୍ଥାନ ଅଧିକାର କରେ ମିଥ୍ୟା-ହିଂସା-ଅସନ୍ତୋଷ କିନ୍ତୁ ତପସ୍ୟା-ଦୟା-ଦାନ ରହେ । ମନୁଷ୍ୟ ରାଜସିକ ଗୁଣକୁ ବହନ କରେ । ପରେ ପରେ ଆସେ ଦ୍ୱାପର ଯୁଗ ମନୁଷ୍ୟ ରାଜସିକ ଏବଂ ତାମସିକ ଗୁଣର ସତ୍ତ୍ୱ ଧାରଣ କରିବା ହେତୁ ଧର୍ମରୁ ଦୁଇପାଦ ଦୟା ଓ ଦାନ ରହେ । ସତ୍ୟ ଓ ତପସ୍ୟା ସ୍ଥାନରେ ହିଂସା-ଅସନ୍ତୋଷ-ଶତ୍ରୁତା ଏବଂ ମିଥ୍ୟା ସ୍ଥାନପାଏ । ଶେଷରେ କଳିଯୁଗର ମନୁଷ୍ୟ ତମୋଗୁଣୀ । ସତ୍ୟ-ତପ-ଦୟା ଭାବ ନଥାଏ । କିନ୍ତୁ ଦାନୀ । ପ୍ରାଣୀମାନେ ମାୟା, ମିଥ୍ୟା-ଅଧର୍ମ-ନିଦ୍ରା-ହିଂସା-ବିଶାଦ-ଶୋକ-ମହାଦୁଃଖ-ଭୟ ଏବଂ ଭାବୁକ ଅର୍ଥାତ୍ କ'ଣ କରିବି, ପଞ୍ଚାକ୍ଷର ମନ୍ତ୍ର । ତେବେ ତମସାଛନ ତମୋଗୁଣ କଳି ସମୟରେ କ'ଣ କ'ଣ ହୁଏ ? ତାହାର

ଅର୍ଥ ପୂର୍ବରୁ ବର୍ଣ୍ଣନା କରାଯାଇଛି । ଯେତେବେଳେ କଳି ଆରମ୍ଭ ହେଲା, ସେତେବେଳେ ଧର୍ମର ତିନିପାଦ ନଥିଲା, ମାତ୍ର ଏକପାଦ ଆଶ୍ରୟ ନେଇଥିଲା ଦାନ ପାଇଁ । କଳିର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମାତ୍ର ଦଶସହସ୍ର ବର୍ଷ । ଏହା କ୍ରମଶଃ ଯେତେ ସଙ୍କୁଚିତ ହେଉଥିବ, କଳି ସେତେ ତମସାଚ୍ଛନ ହେଉଥିବ । ଫଳରେ ମନୁଷ୍ୟର ଅସତ୍ ପ୍ରକୃତି କ୍ରମଶଃ ତାମସ ରୋଗରେ ଜଡିତ ହେଉଥିବ । ଏହି ସମୟର ଘଟଣା କ'ଣ ହୋଇପାରେ ତାହାକୁ ଆଗତ ଭବିଷ୍ୟ ମାଳିକା ସୂଚନା ଦିଏ । କୁଳସ୍ତ୍ରୀ ଦୂରାଚାରିଣୀ ଅସତୀ ପଣେ ସାହସିନୀ,ଦେବ ବ୍ରାହ୍ମଣ ଗୁରୁ ସ୍ୱାମୀ-ଶାଶୁ ଶ୍ୱଶୁରଙ୍କୁ ନଗଣି । କୁଳସ୍ତ୍ରୀ ଅର୍ଥାତ୍ କୁଳବଧୂ । ଯେ ପାରିବାରିକ ସମସ୍ତ ଧାର୍ମିକ କାର୍ଯ୍ୟରେ ମୁଖ୍ୟଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ବ୍ରତ ପିନ୍ଧିଥାଏ ଏବଂ ଶ୍ରାଦ୍ଧ ଉତ୍ସବରେ ପିତୃପୁରୁଷଙ୍କୁ ଜଳଦାନ ଓ ଦୀପଦାନ ପରେ ସେ ପଥଭ୍ରଷ୍ଟ ହୋଇ କାମପିପାସା ମେଣ୍ଟାଇବା ଲାଗି ଦାରୀପଥ ଅନୁସରଣ କରେ । ପରିବାରର ଯେଉଁମାନେ ଗୁରୁଜନ ସେମାନଙ୍କ ନିଜ ଚକ୍ଷୁରେ ବା ହେୟଜ୍ଞାନକରେ । ଯାହା ବର୍ତ୍ତମାନ ଖବର କାଗଜ ପ୍ରତିଦିନ ଏହି ନିର୍ଲ୍ଲଜମାନଙ୍କ କଥା କହେ । କିଏ ବୃଦ୍ଧ ପିତାମାତାଙ୍କୁ ପିଟୁଛି ତ,  କିଏ ହାଣି ପକାଉଛି ଅବା କିଏ ମୁଠିଏ ଖାଇବାକୁ ଦେଉନାହିଁ ଅଥବା କିଏ ଜରାକବରରେ ଆଶ୍ରୟ ନେଲେଣି । ବର୍ତ୍ତମାନ ଅନ୍ଧଙ୍କ ସଂଖ୍ୟାର ଦ୍ରୁତ ବିକାଶ ହେଉଛି । ସ୍ତିରୀ ପୁରୁଷେ ଅସୁନ୍ଦର-ବିରୂପ ନିକଟ ଶରୀର । ସହଜେ ସ୍ତିରୀମାନେ ପୁଣ-ବହୁତ କରିବେ ଭୋଜନ । ମନୁଷ୍ୟମାନେ ସାନସାନ-କେହି ବା ହୋଇବେ ବାମନ । ଏଠାରେ ଅସୁନ୍ଦରର ଅର୍ଥ ସୌଷ୍ଠବ ଗଠନ ନୁହେଁ । ଶରୀର ଗଠନ ସମାନ୍ତରାଳ ନୁହେଁ । ଉଚ୍ଚତା ଏବଂ ଓଜନର ଏକ ବୟସାନୁପାତିକ ବୃଦ୍ଧି ଏବଂ କ୍ଷୟ ହୋଇଥାଏ । କିନ୍ତୁ ଆହାରର ପରିମାଣ ବୃଦ୍ଧି ହେତୁ ବିଭିନ୍ନ ପ୍ରକାର ଶାରୀରିକ ରୋଗ ଆକ୍ରାନ୍ତ କରେ । ଫଳରେ ସନ୍ତାନ ଗଣ ଦୁର୍ବଳ-ଖର୍ବ-ବିକଳାଙ୍ଗ ହୋଇ ଜନ୍ମ ନେଲେଣି ଆଗକୁ ବାଇଗଣଗଛରୁ ବାଇଗଣ ତୋଳିବା ପାଇଁ ଆଙ୍କୁଡା ବା ଲଗି ଦରକାର ହେବ । ସୁନ୍ଦରୀ ହେବାପାଇଁ ବିୟୁଟି ପାର୍ଲର ଅସଂଖ୍ୟ ଖୋଲା ଯାଉଛି । କୃତ୍ରିମ ବାସନା ତେଲ ବା ପାଉଡର ପୁରୁଷ ଶକ୍ତିକୁ ଆକର୍ଷଣ କରିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ନାରୀଙ୍କର ଜନ୍ମଗତ ପ୍ରାକୃତିକ ସୌନ୍ଦର୍ଯ୍ୟ ନଥିବା ହେତୁ ଅପ୍ରାକୃତିର ସମସ୍ତ ପଦାର୍ଥ ବ୍ୟବହୃତ ।

# କଳି ଯୁଗେ ଧନ୍ୟ ନରା ଯୋ ମୃତାଃ - ୫

ବହୁତ ହୋଇବେ ନିର୍ଲଜ-ବିସ୍ତାର ହୋଇବେ ତନୁଜ । ନିରତେ କହି କଟୁବାଣୀ-ଶାଶୁ ଶ୍ୱଶୁରଙ୍କୁ ନଗଣି । ସ୍ୱାମୀ ଗୁରୁଜନ ନମାନି-ଚୋରୀ ମାୟା ସାହସ ଘେନି । ପାପିଷ୍ଠ ବୃଦ୍ଧି ମତଗର୍ବେ ବ୍ୟଭିଚାରିଣୀ ଏ ସ୍ୱଭାବେ । କେତେବର୍ଷ ତପଶ୍ଚାତ୍ କି ? ସତୁରୀ ବା ଅଶୀ ଦଶକ ବେଳେ ବାଳିକା ବିଦ୍ୟାଳୟ ବା ମହିଳା କଲେଜ ମାନଙ୍କରେ ଝିଅମାନଙ୍କ ଚାଲିଚଳନ ବ୍ୟବହାର ଦେଖିଛୁ । କିନ୍ତୁ ଆଜିକାଲି ଦେଖାଶିଖା ଓଡ଼ିଆଙ୍କ ନୀତିରେ ଘରର ବୋହୁ, ଝିଅମାନେ ? କାହାକୁ କହିବା, କପାଳରେ ସିନା ହାତ ମାରିବା । ସମାଜରେ ଏହି ଧରଣ ନାରୀଶକ୍ତି ବୃଦ୍ଧି ହେତୁ ପାପରେ ଗରିଷ୍ଠ ମାନଙ୍କ ସଂଖ୍ୟା ବର୍ଷକୁ ବର୍ଷ ଗୁଣିତକର ହିସାବରେ ଚାଲିଛି, ପୁଣି ଚାଲିଛି ନାରୀ ସଶକ୍ତିକରଣ - ପୁଣି ବଢି ଚାଲିଛି ଧର୍ଷଣ-ପୁଣି ଚାଲିଛି ଦୁଷ୍କର୍ମ-ପୁଣି ଆରମ୍ଭ ହେଲାଣି ଚାରି-ଛ'ବର୍ଷ ଝିଅଙ୍କ ଉପରେ ଅତ୍ୟାଚାର । ଅତ୍ୟାଚାରୀମାନେ ହେଉଛନ୍ତି ଏହି ନାରୀଗର୍ଭରୁ ଜାତ ପାପିଷ୍ଠଗଣ । ପାଗଳ, ଅନ୍ଧ । ମଦ ନହେଲେ ଭୋଜନ ଅସିଦ୍ଧ, ପଶୁ ନହେଲେ ଭୋଜନ ଅସିଦ୍ଧ, ପଶୁ-ପକ୍ଷୀଙ୍କ ମାଂସ ବିନା ଭୋଜି ମୂଲ୍ୟହୀନ । ପ୍ରାୟ ପଚାଶ ବର୍ଷ ତଳର କଥା ଯେ ମଦ ପିଉଥିଲେ । ବଳାତ୍କାର ପାଇଁ ଶରୀରର ଯେଉଁ ଅଂଶଟା ଦୋଷୀ, ତାକୁ ଇଟା ପଥରରେ ଛେଦି ଦିଆ ଯାଉଥିଲା । କିନ୍ତୁ ଆଜି ସମସ୍ତେ ପାଗଳ । ରାଜା ଯାହା ଆଚରଣ ସଂହିତା ହେବ । ମହବେ ଯାହା ଆଚରିବେ ଇତରରେ ତାହା ହିଁ କରିବେ । ସେ ଯାହା ପ୍ରମାଣ କରିବେ-ଲୋକେ ତଦନୁବର୍ତ୍ତୀ ହେବେ । ପୁତ୍ର ହେଉଛି ପିତାମାତାଙ୍କର ବାର୍ଦ୍ଧକ୍ୟରେ ବନ୍ଧୁ କିନ୍ତୁ ପିତା ମାତାଙ୍କର ସେ ବାନ୍ଧବ ମିତ୍ର ସୁହୃଦ ଗୁଣଭାବ । ସକଳ ସଙ୍ଗ ତ୍ୟାଗ କରି-ଶ୍ୱଶୁର ଶାଳକ ପଚାରି । ଶୀଳ ଆଚାର ନ କରିବେ - ସ୍ତିରୀଙ୍କ ବଶେ ଦିନ ନେବେ । କେ କାହା ପିତା କେହୁ ମାତ-ଆପଣା କର୍ମେ ଆତଯାତ । ଯାହାକି ବର୍ତ୍ତମାନ ଘଟୁଛି । ନାରୀବସା ମାନବାଃ । ଏହା ହିଁ ସମ୍ପୂର୍ଣ୍ଣ ସତ୍ୟ । ସଶକ୍ତିକରଣ ଦ୍ୱାରା ଯେଉଁ ନାରୀ ସ୍ୱାଧୀନତା ବୋଲି ଡିଣ୍ଡିମ ପିଟୁଥାଏ, ଅନେକ କ୍ଷେତ୍ରରେ ବୃଦ୍ଧବୃଦ୍ଧା ପିତାମାତାଙ୍କ ପାଇଁ ପୁତ୍ର ଓ ପୁତ୍ରବଧୁଙ୍କ ବ୍ୟବହାର ଦୁଃଖଦାୟକ । ବନ୍ଧୁ କିଏ ? ବାଳକ ବନ୍ଧୁ ପିତାମାତା-ନୟନ ବନ୍ଧୁ ଲୋକପତା ।

ସ୍ତିରୀଙ୍କ ବନ୍ଧୁ ସ୍ୱାମୀ ନିଜ-ପ୍ରଜାର ବନ୍ଧୁ ମହାରଜ । ଭିକ୍ଷୁକ ବନ୍ଧୁ ଗୃହୀଜନ-ଅବନ୍ଧୁ ବନ୍ଧୁ ଶୁଦ୍ଧଜ୍ଞାନ । କିନ୍ତୁ ଏତ କଳିକାଳ ରୀତି ବିପରୀତ ଭାଇରେ । ତେଜିଣ ନିଜ ପତ୍ନୀ ସତୀ-ରମିବ ମେଳଛର ସତୀ । ବୃଦ୍ଧ ଅନାଥ ପିତାମାତା-ମୋର ବିହୁନେ ଅରକ୍ଷିତା । ଏମାନେ ଯେ ବନ୍ଧୁ କିନ୍ତୁ ବନ୍ଧୁଙ୍କୁ ଚିହ୍ନିବାର ଗୋଟିଏ ସମୟ ଅଛି । ବନ୍ଧୁଙ୍କୁ ଚିହ୍ନିବ ବିପଦ ବେଳେ-ସ୍ତିରୀକୁ ଚିହ୍ନିବ ବିତ୍ତ ସରିଲେ । ସବୁ ତ ଦେଖୁଥାଏ ସବୁ ତ ଶୁଣୁଥାଏ । ପ୍ରତିଦିନ ଖବର କାଗଜ ପଢୁଥାଏ । ଆଉ କଳିଭାଗବତ ପଢ଼ି ଲାଭ କ'ଣ ? ଯେଉଁ ଧର୍ମ ପଚିଶଭାଗ ଥିଲା ତାହା କଣା ମାଠି ରୁ ପାଣି ନିଗାଡ଼ି ହୋଇ ଚାଲିଛି । ତେଣୁ କେତେବେଳେ ନିଜର ଯଶା କ'ଣ ହେବ ଅଜଣା ହେତୁ 'କଳିଯୁଗେ ଧନ୍ୟ ନରା ଯୋ ମୃତାଃ' । ପାପିଷ୍ଠ ବୃଦ୍ଧ ମତଗର୍ବ ବ୍ୟଭିଚାରିଣୀ ଏ ସ୍ୱଭାବେ । ଯୌବନ ଆସେ ପୁଣି ଚାଲିଯାଏ । ତା'ର ସ୍ଥିରତା ନଥାଏ । କିନ୍ତୁ ଏହି ଅସ୍ତାଶୟୀ ଯୌବନକୁ ଯେ ସ୍ଥାୟୀ ବୋଲି ଭାବି ପାଗଳ ହୁଏ ଏବଂ ଯେତେପ୍ରକାରର ପାପକରେ ଫଳ ତା'ର-ଏପରି ମନୁଷ୍ୟ ମଳଗତ ହୋଇ-କ୍ଷୁଦ୍ର ବ୍ୟାଧିରେ ପୀଡାପାଇ । ପୂର୍ବ ରୋଗ କହିଲେ ହଇଜା-ବସନ୍ତ-ମେଲେରିଆ-କୁଷ୍ଠରୋଗ ଏବଂ ଆକ୍ରାନ୍ତ ରୋଗୀଥିଲେ । କିନ୍ତୁ ଏବେ ବହୁନାରୀ ସଙ୍ଗମ ଦ୍ୱାରା ଏଡସ୍ ଏକ ମହାମାରୀର ଭୂମିକା ଗ୍ରହଣ କଲାଣି । ଶୁଷ୍କ ଫଳ ପନିପରିବା ଦ୍ୱାରା କେତେ କେତେ ନୂଆ ନୂଆ ରୋଗ ସୃଷ୍ଟି ହେଲାଣି । ମଦ୍ୟପାନ ପାଇଁ ହୃଦ୍‌ରୋଗରେ ଆକ୍ରାନ୍ତ ହେଉଛି ମଣିଷ । ତା ସଙ୍ଗେ ସଙ୍ଗେ ସାମାଜିକ ସ୍ତରରେ ଲୋଭ-ମୋହ-ମାୟା-ତ୍ୟାଗ-ଧୈର୍ଯ୍ୟ ଅଭାବରୁ ହତ୍ୟା-ଡକାୟତି ଭଳି ରୋଗ, ଦୁଷ୍କର୍ମ ଯୌନରୋଗ ଇତ୍ୟାଦି କଳିଯୁଗ ପାଇଁ ଯଦିଓ ବଞ୍ଚି ରହିବାର ବୟସ ଏକଶହ କୋଡିଏ ହେଲେ ତାହା ଦୁଃଖ-ଯନ୍ତ୍ରଣା-ଅଭାବ-ଅନାଟନ-ରୋଗ-ବ୍ୟାଧି ପାଇଁ କଳିଯୁଗେ ଧନ୍ୟ ଯୋ ନରା ମୃତାଃ । ତେବେ ଆଗତ ଭବିଷ୍ୟମାଳିକା ଯାହା କହିଛି ଏବଂ ବର୍ତ୍ତମାନ ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ୍ୟ ଯାହା ଅନୁଭବ କରୁଛନ୍ତି ତାହାହିଁ ସତ୍ୟ । ତେବେ କ'ଣ ଦେଖନ୍ତି ? ଯେଉଁଜନର ଧନ ଥିବ-ସଂସାରେ ବଡ଼ ସେ ହୋଇବ । ଯାହାର ସତ୍ୟଗୁଣ ଥିବ-ତାହାକୁ କେହି ନ ମାନିବ । ସ୍ତିରୀର ସ୍ତିରୀଙ୍କୁ ରସିବେ-ପୁରୁଷେ ପୁରୁଷେ ଭାବିବେ । ବେଶ୍ୟାକୁ ପାଇ ନିଜ ନାରୀ-ଛାଡି ତା ସଙ୍ଗେ କ୍ରୀଡା କରି । ନିନ୍ଦା କରିବେ ବେଦମାର୍ଗ-କିଞ୍ଚିତ ଜ୍ଞାନେ କରି ଗର୍ବ । ପରଜାମାନେ ଦୁଷ୍ଟଜନେ । ପ୍ରଜାମାନଙ୍କୁ କଷ୍ଟ ଦେବେ-ଅଧର୍ମ ବଳ ଗୁଣ ଭାବେ । ସର୍ବସ୍ୱ ପ୍ରଜାଙ୍କର ନେବେ-ବିକଳ କେହୁ ନଶୁଣିବେ ପର ଦ୍ୱାରା

ଧନ ହରିବେ-ଶୋକ ବିପଦେ ଦଣ୍ଡଦେବେ । କଳିଯୁଗରେ ପ୍ରାଣୀମାନେ-ପାପେ ହୋଇବେ ଆୟୁହୀନ । ରାଜାଏ ହୋଇବେ ଆୟୁହୀନ । ରାଜାଏ ଦସ୍ୟୁପରି ହେବେ-ପ୍ରଜାଏ ଏମନ୍ତ କରିବେ । ଚୌର୍ଯ୍ୟ ହିଂସା ମିଥ୍ୟା ବିବାଦ ଘାତ ବୃତ୍ତିଛେଦ । ସର୍ବ ଶସ୍ୟଗଣ-ସକଳ ହେବେ ରସହୀନ-ସକଳ ହେବେ ରସହୀନ । ମେଘ ଯେ ଗର୍ଜନ କରିବେ-ବିଦ୍ୟୁତମାନେ ଆଚ୍ଛାଦିବେ । ବରଷା କିଞ୍ଚିତ କରିବ ପବନେ ମେଘ ଉଡିଯିବ । ଫିରି ଫିରି ବରଷା କରି ପ୍ରଜାଚାଷ କରି ନପାରି ଘରମାନ ଶୂନ୍ୟ ହୋଇବ-ପ୍ରାଣୀଏ ନିର୍ଦ୍ଧନେ ବଞ୍ଚିବେ । ଏମାନେ ପୁଣ-ସବେ ହୋଇବେ ଅନ୍ତର୍ଦ୍ଧାନ ସକଳ ପୂଣ୍ୟସ୍ଥାନମାନ-ତମରେ ହୋଇବ ଗୋପନ । ଚେଭାରେ ଜାତିଭେଦ ନାହିଁ-ସମସ୍ତେ ଏକାକାର ହୋଇ । କୁଳସ୍ତିରୀ ଦୁରାଚାରିଣୀ-ଅସତୀ ପରେ ସାହସିନୀ । ଦେବ ବ୍ରାହ୍ମଣ ଗୁରୁ ସ୍ୱାମୀ-ଶାଶୁ ଶ୍ୱଶୁରଙ୍କୁ ନଗଣି । ନିରବେ କହି କଟୁବାଣି-ଶାଶୁ ଶ୍ୱଶୁରଙ୍କୁ ନମଣି । ସ୍ୱାମୀର ନିର୍ଦ୍ଧନ ଦେଖିବେ-ସେବକମାନେ ଛାଡିଦେବେ । ପିତାମାତାର ସେ ବାନ୍ଧବ-ମିତ୍ର ସୁହୃଦ ଗୁଣଭାବସକଳ ସଙ୍ଗତ୍ୟାଗ କରି ଶ୍ୱଶୁର ଶାଳକ ପଚାରି । ମେଘ ବରଷା ନ ବରଷି-ତେଣୁ ନ ଉପୁଜିବ କୃଷି । ଅକାଳେ ବରଷିବ ଜଳ-ଏ ଘେନି ନଫଳିବ ଫଳ । ଭର୍ତ୍ତା ସାଧବୀ ପତିବ୍ରତା ଛାଡିଆନେ ହୋଇବେ ରତା । ପୁରୁଷେ ବେଶ୍ୟାକୁ ଭଜିବେ କୁଳସ୍ତ୍ରୀମାନେ ଏହିମତେ-ନାଶିବେ କୁଟୁମ୍ବ ସହିତେ । ଇନ୍ଦ୍ରିଲାଳସେ ପେଟ ପୋଷି-ରହିବେ ହୋଇ ଦାସଦାସୀ । ଏ କଳିଯୁଗେ ପାପ ଯେତେ-ପ୍ରାଣୀ ସଞ୍ଚଇ ମାୟା ଗ୍ରସ୍ତେ । ଏ କଳିଯୁଗେ ଏକା ସାର ଭଜନ ଶ୍ରୀକୃଷ୍ଣ ପୟର । ଏ ବିନା ଅନ୍ୟଗତି ନାହିଁ - ଭଜ ସୁଜନେ ମନଦେଇ । ଅତଏବ 'କଳିଯୁଗେ ଧନ୍ୟ ଯୋ ନରା ମୃତାଃ ।'

# ସ୍ୱାର୍ଥ ପାଇଁ ସମ୍ପର୍କ ଜୀବିତ - ୧

ସ୍ୱାର୍ଥପାଇଁ ସମ୍ପର୍କ କିନ୍ତୁ ସ୍ୱାର୍ଥ ନଥିଲେ ସମ୍ପର୍କ ମୃତବତ । କିଏ କାହାକୁ ପଚାରେ ? ଅଚିହ୍ନା ଏବଂ ଅଜଣା । ଏହା ଯୁଗେ ଯୁଗେ ପ୍ରତିଫଳିତ । ତେଣୁ ଶ୍ରୀମଦ୍ ଭାଗବତ କହେ, 'ଯେ ଯାହା ଭାବ ଅର୍ଥ ଜାଣି-ଭାବେ ଭାବନ୍ତି ସର୍ବ ପ୍ରାଣୀ ।' ସେଥିପାଇଁ କୁହାଯାଏ ତା ଦାନକୁ ଭୁଲିଯିବା ଉଚିତ କିନ୍ତୁ ଗ୍ରହୀତା ଭୁଲିଯିବା ହିଁ ଦୁର୍ଭାଗ୍ୟ । ଉପକାରୀର ଉପକାରକୁ ଭୁଲିବା ହିଁ ନିର୍ବୋଧତା । ଉପକୃତର ଏହା ହେଉଛି କୃତଘ୍ନତା । ତେଣୁ, ଯାବତ ଥାଇ ଅର୍ଥଲାଭ ତାବତ ଥାଇ ପ୍ରିୟଭାବ । ସାଧାରଣ କଥାରେ କୁହାଯାଏ ବେଦିମୁହଁ ପୋଡା । ଅର୍ଥାତ୍ ଶତ୍ରୁତା ନଥାଇ ଶତ୍ରୁତା କିନ୍ତୁ ମନୁଷ୍ୟ ଏତେ ସ୍ୱାର୍ଥପର ଯେ ସେ ସାମାନ୍ୟ କଥା ପାଇଁ ମଧ ସମ୍ପର୍କକୁ ଛିନ୍ନ କରେ । ନା । ଏହା ସଚରାଚର ଜଗତରେ ଦୃଷ୍ଟ । ଯେପରି ପରପୁରୁଷେ ପ୍ରିୟ ହୋଇ-ଯେନାରୀ ଜୀବନ ବହଇ । ତେବେ ନିଜର ପୁରୁଷ ସହିତ ସମ୍ପର୍କ ? କାରଣ, ତାହାର ନାହିଁ ସ୍ନେହ ଚିତ୍ତ-ଧନରେ ପ୍ରିୟ ଅବିରତ । ଯେଉଁ ନାରୀର ପ୍ରଚୁରଧନ ସମ୍ପତ୍ତି ପାଇବାର ଇଚ୍ଛା କିମ୍ବା ଭୋଗବିଳାସରେ ମନ, ତା'ର ସ୍ୱାମୀ ଯେତେ ସୁନ୍ଦର, ଶିକ୍ଷିତ ରକ୍ଷଣଶୀଳ ବୁନିଆଦି ଘରର ପୁଅ ହୋଇବି ଯଦି ଗରିବ, ସ୍ତ୍ରୀର ମନଲାଖି ଭୋଗବିଳାସ ଯୋଗାଇବାକୁ ଅକ୍ଷମ, ତେଣୁ ସେମାନଙ୍କ ମଧରେ ସ୍ନେହ-ମମତା-ପ୍ରୀତିର ବନ୍ଧନ ନାହିଁ । ସେ ନାରୀ ହିଁ ବାରାଙ୍ଗନା କହିଲେ ଭୁଲ ହେବନାହିଁ । ଯେହେତୁ ଅସ୍ଥାୟୀ ପ୍ରତି ଆଗ୍ରହୀ । ଯୌବନ-ଧନ-ସମ୍ପତ୍ତି କ୍ଷଣସ୍ଥାୟୀ ପାଇଁ ହସ୍ତଗତ ହୁଏ, ବିଦାୟ ସମୟରେ ଦୁଃଖ ଦିଏ । ଧନୀ ବଡ଼ଲୋକ ଶକ୍ତିଶାଳୀ ହେବାକୁ କିଏ ବା ନ ଚାହେଁ, କିନ୍ତୁ ଠକାଠକି ଧନର ମୂଳୋତ୍ପାଟନ ଧ୍ରୁବସତ୍ୟ । ଅତଏବ, ସ୍ତ୍ରୀ ବା ନାରୀକୁ ଚିହ୍ନିବ ବିତ୍ତ ସରିଲେ । କୁସୁମେ ଯେମନ୍ତେ ଭ୍ରମର ମଧୁ-ପାଇଣ ଯାଏ ଦୂର । ଯେଉଁ ପୁଷ୍ପରେ ମଧୁଥାଏ ଏବଂ ଯେତେଦୂରରେ ଥିଲେ ମଧ ପୁଷ୍ପ ଭ୍ରମର ନିକଟକୁ ଆସିବା ପରିବର୍ତ୍ତେ ଭ୍ରମରଯାଏ କିନ୍ତୁ ଦୁଃଖର କଥା ମଧୁପାନ ପରେ ପୁଷ୍ପ ଚାହିଁଥାଏ କିନ୍ତୁ ଭ୍ରମର ? କାରଣ ସ୍ୱାର୍ଥପାଇଁ ସେହିଭଳି ସୁନ୍ଦର ପୁରୁଷ ନିର୍ଦ୍ଧନ-ଗଣିକା ଛାଡଇ ଯେସନ । ଗଣିକା ବା ଦେହଜୀବୀର ସ୍ୱାର୍ଥ ଥାଏ ଧନ ପାଇଁ କିନ୍ତୁ ପୁରୁଷର ଶିକ୍ଷା-ପଦ-ପଦବୀ-ବଳିଷ୍ଠ ସୌଷ୍ଠଭବପୁ ପାଇଁ ସାଧାରଣ ନାରୀମାନେ ଆକୃଷ୍ଟ ହୋଇଥିଲେ ମଧ ଗଣିକା ଛାଡି ଯେହ୍ନେ ଦୁଃଖୀ । ଶାସକ ବା ରାଜା ଯଦି

ଅଯୋଗ୍ୟ, ପ୍ରଜା ପୀଡା ପାଉଥିବା ହେତୁ ସେହିରାଜାଙ୍କୁ ପରିତ୍ୟାଗ କରିଥାନ୍ତି । ଯେହେତୁ ରାଜା ପ୍ରଜାମାନଙ୍କର ସ୍ୱାର୍ଥ ସାଧନ ପାଇଁ ଅଯୋଗ୍ୟ, ଭାଜନ ନୁହେଁ। ତେଣୁ ସମ୍ପର୍କ ତୁଟିଯାଏ । ତେବେ ପ୍ରଜାଙ୍କର ଆବଶ୍ୟକ କ'ଣ ? ସୁ ଶାସନ । ବିଦ୍ୟା ପାଇଲେ ଶିଷ୍ୟ ଗୁରୁ ସେ ଯେହ୍ନେ ତେଜନ୍ତି ମନରୁ। ବିଦ୍ୟାଦାନ ଓ ଶିକ୍ଷାଗ୍ରହଣ ମଧରେ ସମ୍ପର୍କ ହେତୁ ଗୁରୁଶିଷ୍ୟଙ୍କ ମଧରେ ସମ୍ପର୍କ ସୃଷ୍ଟି ହୋଇଥାଏ । ତାହାପୁଣି ନିର୍ଦ୍ଦିଷ୍ଟ ସମୟସୀମିତ କାର୍ଯ୍ୟକ୍ରମ । ଶିଷ୍ୟ ଉଚ୍ଚତର ଶିକ୍ଷା ନିମିତ୍ତ ଗୁରୁଙ୍କୁ ତ୍ୟାଗ କରିବା ସଙ୍ଗେ ସଙ୍ଗେ ମଧ ଶିଷ୍ୟ ଗୁରୁଙ୍କୁ କ୍ରମଶଃ ଭୁଲି ଥାଆନ୍ତି । ଏଠାରେ ମଧ ସ୍ୱାର୍ଥ ସମ୍ପର୍କ ଗୁରୁଶିଷ୍ୟଙ୍କ ମଧରେ ବିଦ୍ୟମାନ । ଦକ୍ଷିଣା ପାଇ ବିପ୍ରଜନେ-ଯେହ୍ନେ ତେଜନ୍ତି ଯଜମାନେ । ଯଜମାନଙ୍କର ଆବଶ୍ୟକତା ଥାଏ ପୂଜାପାଠ ବା ଅନ୍ନଭୋଜନ ପାଇଁ । ବିପ୍ର ସେ ସମସ୍ତ ଶେଷ ପରେ ଚାହେଁ ଦକ୍ଷିଣା । ଯେତେବେଳେ ପର୍ଯ୍ୟନ୍ତ ଦକ୍ଷିଣା ହସ୍ତଗତ ହୋଇ ନଥାଏ ଉଭୟଙ୍କ ମଧରେ ସମ୍ପର୍କ ଥାଏ, ଏହା ହିଁ ସ୍ୱାର୍ଥପାଇଁ ଉଦ୍ଦିଷ୍ଟ ବା ପାରିଶ୍ରମିକ । ତା ପରେ ସମ୍ପର୍କ ଛିନ୍ନହୁଏ । ଫଳ ସରିଲେ ବୃକ୍ଷଛାଡି-ପକ୍ଷୀଏ ଯାନ୍ତି ଯେହ୍ନେଉଡି । ବୃକ୍ଷର ସମସ୍ତ ଅଂଶର ଆବଶ୍ୟକତା ଥିବା ବେଳେ ଫଳ ମନୁଷ୍ୟ ଓ ପକ୍ଷୀମାନଙ୍କର ଖାଦ୍ୟ ହିସାବରେ ଆବଶ୍ୟକତା ପୂରଣ କରିଥାଏ । କିନ୍ତୁ ପକ୍ଷୀମାନେ ଫଳ ଆହାର ହେତୁ ବୃକ୍ଷ ଫଳଶୂନ୍ୟ ହେଲେ ଅନ୍ୟତ୍ର ଉଡିଯିବାକୁ ବାଧ ହୁଅନ୍ତି । କିନ୍ତୁ ଋତୁ ପରିଦର୍ଶନ ହେତୁ ବିଭିନ୍ନ ସମୟରେ ବିଭିନ୍ନ ଫଳ ବୃକ୍ଷଧାରଣ କରୁଥିବାରୁ ପକ୍ଷୀଗଣ ଗୋଟିଏ ପରେ ଗୋଟିଏ ଗଛକୁ ଆଶ୍ରୟ କରିଥାନ୍ତି । କେବଳ ଫଳପାଇଁ ପକ୍ଷୀ ଓ ବୃକ୍ଷର ସମ୍ପର୍କ ଥାଏ । ଅତିଥି ଯେହ୍ନେ ଖାଇପିଇ-ପଦେ ନ ପୁଛି ଚାଲିଯାଇ । ଅତିଥି ବା ପଥିକ କିମ୍ବା ଭିକାରୀ ଗୃହୀଜନଙ୍କ ସହ କ୍ଷଣିକ ପାଇଁ ସମ୍ପର୍କ ସ୍ଥାପନ କରେ । କାରଣ ତା'ର ସ୍ୱାର୍ଥ ଖାଦ୍ୟ ସହିତ ଜଡିତ । ପୋଡିଲା ବନ ପଶୁଗଣେ ଛାଡିପକାନ୍ତି ଅନ୍ୟବନେ । ପଶୁମାନଙ୍କର ଆଶ୍ରୟସ୍ଥଳ ହେଉଛି ବଣ ଜଙ୍ଗଲ । ସେହିଠାରେ ଆହାର ଓ ଆଶ୍ରୟ ପାଆନ୍ତି । ଗ୍ରୀଷ୍ମକାଳରେ ବୃକ୍ଷ ବୃକ୍ଷ ମଧରେ ଘର୍ଷଣ ହେତୁ ବା ଜଙ୍ଗଲବାସୀ ମାନଙ୍କ ଦ୍ୱାରା ଜଙ୍ଗଲ ପୋଡିଗଲେ ପଶୁମାନ ଅନ୍ୟତ୍ର ଯିବାକୁ ବାଧ ହୁଅନ୍ତି । ବର୍ତ୍ତମାନ ଠିକ୍ ସେହିହେତୁ ଜଙ୍ଗଲୀପଶୁ ବସତି ଆଡକୁ ଆସି ଧନ-ଜୀବନ-ଶସ୍ୟ କ୍ଷେତ୍ରସବୁ ନଷ୍ଟ କରୁଛନ୍ତି । କାରଣ ସେମାନଙ୍କର ସ୍ୱାର୍ଥ ପୂର୍ଣ୍ଣ ହୋଇପାରୁ ନାହିଁ। ପର ପୁରୁଷେ ପରନାରୀ-ରମଣ ଯେସନ ପାଶୋରି । ପରସ୍ପର ପ୍ରତି ଆର୍କଷଣ ନଥାଇ କ୍ଷଣିକ ଉନ୍ମାଦନା ବା

ପାଗଳାମୀ ହେତୁ କାମନାର ସନ୍ତୁଷ୍ଟି କାରଣ ପାଇଁ ଯାହାଟା ହୁଏ ତାହା ହିଁ କ୍ଷଣିକ ସ୍ୱାର୍ଥଜନିତ ସମ୍ପର୍କ। ପରମୁହୂର୍ତ୍ତରେ ପାଶୋରି ଥାଆନ୍ତି, ଏହା ହିଁ ବଳାତ୍କାର। ଭଗବାନ ଶ୍ରୀକୃଷ୍ଣ କଂସର ନିଧନ ପରେ ଭାଇ ବଳରାମଙ୍କ ସହ ମଥୁରା ନଗରୀରେ ରହିଗଲେ। ନନ୍ଦରାଜାଙ୍କ ଗୋପପୁର ଏବଂ ବାଲ୍ୟକାଳ ଅବସ୍ଥାରେ ଗୋପୀମାନଙ୍କ କଥା ଭୁଲିଗଲେ। ଗୋପୀମାନଙ୍କ ଅବସ୍ଥାର ସମୀକ୍ଷା ପାଇଁ ଭକ୍ତ ଉଦ୍ଧବଙ୍କୁ ଗୋପକୁ ପ୍ରେରଣ କରିଛନ୍ତି। ଉଦ୍ଧବ ଗୋପଦାଣ୍ଡରେ ପଦାର୍ପଣ କରିବାମାନେ ଗୋପୀମାନଙ୍କ ମଧ୍ୟରେ ଭାଜେଣି ପଡିଛି। ଉଦ୍ଧବଙ୍କର ବେଶପୋଷାକ ଓ ଶରୀରର ଉଜ୍ଜ୍ୱଳ ଅବସ୍ଥା ଗୋପୀମାନଙ୍କ ମତରେ ଭ୍ରମ ସୃଷ୍ଟି କରିଛି। ସେମାନେ କୃଷ୍ଣଙ୍କ ବିହୁନେ ଏଭଳି ପାଗଳି ଅବସ୍ଥାରେ ଥିବା ଅବସ୍ଥାରେ ଗୋପୀମାନେ ଉଦ୍ଧବଙ୍କ ନିକଟରେ କୃଷ୍ଣଙ୍କ ବିରୁଦ୍ଧରେ ଆପତ୍ତି ଅଭିଯୋଗ ଆଗତ କରି ଚାହିଁଛନ୍ତି ତା'ର ଉତ୍ତର। କାରଣ କୃଷ୍ଣଙ୍କ ନିକଟରେ ସେମାନଙ୍କର କିଛି ବ୍ୟକ୍ତିଗତ ସ୍ୱାର୍ଥ ନଥିଲା। ସମ୍ପର୍କରେସେତୁ ସ୍ୱାର୍ଥଦ୍ୱାରା ଉଦ୍ଦିଷ୍ଟ ନଥିଲା। ତେବେ କୃଷ୍ଣ ତାଙ୍କୁ ଛାଡିଗଲେ କାହିଁକି ଏବଂ ପାଶୋରିଲେ କିପରି ? ଉପରୋକ୍ତ ଉଦାହରଣ ଗୁଡିକ ଉଦ୍ଧବଙ୍କୁ ପଚାରିବାର ଉଦ୍ଦେଶ୍ୟ ବିଷୟରେ ପରୀକ୍ଷିତଙ୍କୁ ଶୁକଦେବ କହୁଛନ୍ତି, ମୁନୀ ଯେ ଯାହା ଭାବ ଅର୍ଥ ଜାଣି-ଭାବେ ଭାଳନ୍ତି ସର୍ବ ପ୍ରାଣୀ।

## ସ୍ୱାର୍ଥ ପାଇଁ ସମ୍ପର୍କ ଜୀବିତ - ୨

ପ୍ରେମ ଭକ୍ତି ହିଁ ଶ୍ରେଷ୍ଠ ଭକ୍ତି। ନବଧା ଭକ୍ତି ମଧ୍ୟରେ ଶ୍ରେଷ୍ଠତମ। ଉଦ୍ଧବଙ୍କୁ ଏହିକଥା ପ୍ରତ୍ୟେକ୍ଷ ଭାବେ ଜଣାଇ ଦେବାକୁ ପରୋକ୍ଷ ଭାବେ ଏହା ହିଁ ନିର୍ଦ୍ଦେଶ। ପ୍ରଥମ ଭକ୍ତି ସାଧୁସନ୍ଥଙ୍କର ସାଙ୍ଗ। ଦ୍ୱିତୀୟ ପ୍ରେମ, ତୃତୀୟ ଅଭିମାନ ଶୂନ୍ୟ ହୋଇ ଗୁରୁଙ୍କ ଚରଣ ସେବା, ଚତୁର୍ଥ କପଟ ତେଜି ଭଗବାନଙ୍କର ଗୁଣଗାନ କରିବା, ପଞ୍ଚମ ମନ୍ତ୍ରରେ ଜପ ଓ ଭଗବାନଙ୍କ ଉପରେ ବିଶ୍ୱାସ, ଷଷ୍ଠ ବୈରାଗ୍ୟ ଓ ସପ୍ତମରେ ସମଗ୍ର ଜଗତକୁ କୃଷ୍ଣମୟ ଦେଖିବା, ଅଷ୍ଟମ ଯାହା ଓ ଯେମିତି ମିଳେ ସେଥିରେ ସନ୍ତୁଷ୍ଟ, ସ୍ୱପ୍ନରେ ସୁଦ୍ଧା ଅନ୍ୟର ଦୋଷ ଦେଖିବା ଅନୁଚିତ ଏବଂ ନବମତଃ ସମସ୍ତଙ୍କର ସହ ସରଳ ଓ କପଟ ରହିତ ଏବଂ ଯେକୌଣସି ଅବସ୍ଥାରେ ହର୍ଷ ବା ବିଷାଦଗ୍ରସ୍ତ ହେବନାହିଁ। ଏଗୁଡିକ ହେଉଛି ପ୍ରକୃତ ଭକ୍ତଙ୍କର ଭଗବାନଙ୍କ ନିକଟରେ କଷଟି ପଥରରେ ପରୀକ୍ଷା। ଏଠାରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଗୋପପୁରକୁ ଓ ଗୋପୀମାନଙ୍କ ନିକଟକୁ ପ୍ରେରଣ

କରିବାର ଉଦ୍ଦେଶ୍ୟ। ଯେ ଯାହା ଭାବ ଅର୍ଥ ଜାଣି-ଭାବେ ଭାଜନ୍ତି ସର୍ବପ୍ରାଣୀ। ଏହା ହିଁ ନବଧା ଭକ୍ତିର ମୂଳସୂତ୍ର। ଉପରୋକ୍ତ ପ୍ରଶ୍ନଗୁଡିକ ଉଦ୍ଧବ ଶ୍ରବଣ କରିବା ପରେ ହେଲେ ନିରୁତ୍ତର। ଭଗବାନ ସ୍ୱାର୍ଥ ରହିତ ଏବଂ ସମ୍ପର୍କ ବିହୀନ। ଗୋପାଙ୍ଗନାମାନେ ଯେଉଁ ପ୍ରକାରର ଅଭିଯୋଗ କରନ୍ତି ତା'ର ସତ୍ୟାସତ୍ୟ ଉଦ୍ଧବଙ୍କ ସୀମାବାହାରର ନିଷ୍ପତ୍ତି। ପରେ ଗୋପୀମାନେ ଉଦ୍ଧବଙ୍କ ଚରଣାଶ୍ରୟୀ ହେବା ସମୟରେ ବୃନ୍ଦାବତୀ ନାମ୍ନୀ ଏକ ଗୋପୀ ଶାରୀରିକ ଦୁର୍ବଳତା ହେତୁ ଉଦ୍ଧବଙ୍କ ନିକଟକୁ ଆସିବାରେ ବିଳମ୍ବ ସତ୍ତ୍ୱେ ପଥ ମଧ୍ୟରେ ବିଶ୍ରାମ ନେଇଛନ୍ତି। ହଠାତ୍ ଗୋଟିଏ କଳାଭ୍ରମର ଶୂନ୍ୟରୁ ଉଡିଆସି ତାଙ୍କର ଚରଣ ସ୍ପର୍ଶ କଲା। ବୃନ୍ଦାବତୀ ଭ୍ରମରକୁ ଗୋଟିଏ ଗୋଇଠା ଦେଇ କହିଲା ଏ ହେଉଛି କୃଷ୍ଣକଳା ଏବଂ ଭ୍ରମରର ରୂପ ମଧ୍ୟ କଳା। ମଧୁପ ହେଉଛି ଭଗବାନଙ୍କର ଚାକର। କେତେ ତପ କରି ସେଭଳି ମୁନିବଙ୍କୁ ପାଇ ସାରିବା ପରେ ମୋର ପାଦସ୍ପର୍ଶ କରିବା ଅନୁଚିତ। ଚକ୍ରପାଣି ନ ଆସିବାର ବିଭିନ୍ନ କାରଣମାନଙ୍କ ମଧ୍ୟରୁ ଗୋଟିଏ ମୁଖ୍ୟ କାରଣ ହେଉଛି ସେ ମଥୁରାରେ ସୁନ୍ଦରୀମାନଙ୍କ କବଳରେ ଆଶ୍ରିତ। ସେହି ନାରୀଗଣ ଗୋପାଙ୍ଗନାମାନଙ୍କର ସଉତୁଣୀ। ସେମାନଙ୍କୁ ରାତ୍ରରେ ରମଣ କଲେ। ସେମାନେ କୁଙ୍କୁମରେ ଭୂଷିତ ହୋଇଥିବା ହେତୁ ତାଙ୍କର ମୁଖରେ ସେହି ଦାଗ ସ୍ପଷ୍ଟ ଅନୁଭୂତ। ଆଉ ସେହି ବାଙ୍କଚୂଡା କ'ଣ କ'ଣ କରିଛନ୍ତି ଶୁଣିବା ହେଉ। ଯମୁନା କଦମ୍ବର ତଳେ ରାତ୍ରେ ବସିଲା କାମ ଭୋଳେ। ସେଠାରେ ବେଣୁନାଦ କଲା ଆମ୍ଭର ଜୀବନ ହରିଲା। କାମ ଲାଳସାର ପରିପୂର୍ଣାର୍ଥେ ସମସ୍ତେ ଗୋପୀ ନିଜର ସଂସାରକୁ ତ୍ୟାଗ କରି ସେଠାରେ ଉପସ୍ଥିତ ହେଲେ। କାରଣ ଶ୍ରୀକୃଷ୍ଣଙ୍କର ବଂଶୀ ଧ୍ୱନି ବିଚଳିତ କଲା। କାମନାଗ୍ନି ନିର୍ବାପିତ ନ ହେଲେ ନାରୀ ବଡ଼କଷ୍ଟ ପାଏ। ମୋହନ ମୋହିଲା ଏବଂ ମୁଖରେ ଚୁମ୍ବନ ଦେବା ପରେ ସେହି କାମନାଗ୍ନି ନିର୍ବାପିତ ହେଲା। ଠିକ୍ ସେହିଭଳି ଭ୍ରମର ଯେତେବେଳେ ପୁଷ୍ପ ଠାରୁ ମଧୁପାନ କରେ, ପୁଷ୍ପଙ୍କୁ ମଧ୍ୟ ଗାଢ ଆଲିଙ୍ଗନ କରେ। କାରଣ ଏହା ଭ୍ରମଣ ବା ପୁରୁଷର ଧର୍ମ। ସେହିପାଦ ପଦ୍ମରେ ମାୟା ମୋହନ କଥା କହି ଲକ୍ଷ୍ମୀଙ୍କ ମୁଖ ସେ ବାନ୍ଧିଲା। ତୃଷା ହରଇ କାମ ଭୋକେ-ତେଣୁ କମଳା ତାର କୋକେ। ଅତଏବ ରେ ଭ୍ରମର, ମୋ ଠାରୁ କ'ଣ ପାଇବୁ। ସେହି ମଥୁରାର ଅନେକ ଚତୁରୀ ଯୁବତୀ ତା'ର ପାଦ ସେବା କରୁଛନ୍ତି। ଗୋପୀଙ୍କର ରାଗ, କ୍ରମଶଃ କମି ଆସିଛି। ଏହା ସାଧାରଣ ପାରିବାରିକ ଘଟଣା। ସ୍ୱାମୀ ଉପରେ ବର୍ତ୍ତନ କରିଥାଏ। ବର୍ତ୍ତମାନ ଗୋପୀ ଶ୍ରୀକୃଷ୍ଣଙ୍କୁ ଉତ୍ତମ ସାର୍ଟିଫିକେଟ ଦେଉଛନ୍ତି। ଦୁର୍ଲ୍ଲଭ ନାମ ତାଙ୍କର, କୃଷ୍ଣ ଅର୍ଥାତ୍ ସର୍ବାଶ୍ଚର୍ଯ୍ୟ।

କୋଟିଏ କାମ ଅବତାର, କପଟୀ, ସୁନ୍ଦର ଏବଂ ତା'ର ହସ ମନକୁ ମୋହିନିଏ। ତଥାପି ହେ ଭ୍ରମର ଶୁଣ, କୃଷ୍ଣ ଯେ କରୁଣାସାଗର। ଦରିଦ୍ର ଲୋକେ ଯାର ଦୟା ତାହାକୁ କହି ପୂଣ୍ୟ ନେହା। ତାଙ୍କ ପାଇଁ ପିତି-ତନୟା-ଇଷ୍ଟ-ଭାଇ-ବନ୍ଧୁ କୁଟୁମ୍ବଙ୍କୁ ତ୍ୟାଗ କଲୁ। ଗୋପୀମାନଙ୍କୁ କୃଷ୍ଣ, ତାହାର କଲା କର୍ମମାନ-ମନେ ପଡିଲେ ବୁଡେ ଜ୍ଞାନ। ତାଙ୍କୁ ଏତେ ସ୍ନେହ କରିବା ସତ୍ତ୍ୱେ ସେ ଗୋପୀମାନଙ୍କୁ ତ୍ୟାଗ କରିଥିବା ହେତୁ ଏଠାରେ କିଛି ସ୍ୱାର୍ଥ ନଥିଲା। କିମ୍ବା ଗଭୀର ସମ୍ପର୍କ ନଥିଲା ବୋଲି ପ୍ରମାଣିତ। ଏକ ସୁନ୍ଦର ତୁଳନାତ୍ମକ ଘଟଣା ଗୋପୀ କହନ୍ତି। ବ୍ୟାଧ ଯେସନ ମୃଗମାରି-ଘଣ୍ଟି ଚାଲେ ଧରି। ତାହାର ବାଣେ ହତ ହୋଇ-ବିକଳେ ବନେ ସେ ପଳାଇ। ରୁଧିର ନିଧନେ କଳେବର-ଜୀବନ ଛାଡଇ ତାହାର। ତେମନ୍ତ କଲା ନନ୍ଦବଳା-ଆମ୍ଭଦେହରେ ନଖ ଦେଲା। ବ୍ୟାଧ ଜଙ୍ଗଲରେ ପଶୁ ହତ୍ୟା ପାଇଁ ଶରନିଶାଣ କଲେ। ଆହତ ପଶୁ ରକ୍ତାକ୍ତ ଶରୀର ସମୟରେ ରଡି ଶୁଣି ଅନ୍ୟାନ୍ୟ ପଶୁ ଯେପରି ପଳାୟନ କରନ୍ତି ଠିକ୍ ସେହିଭଳି ଗୋପୀମାନଙ୍କୁ ନଖ ଦ୍ୱାରା କ୍ଷତବିକ୍ଷତ କରି ମଥୁରାପୁରକୁ କୃଷ୍ଣ ଚାଲିଗଲେ। ବ୍ୟାପାରେ କରନ୍ତେ ତା ଦେଖି-ବିକଳ ବୁଜୁ ବେନିଆଖି। ଏଠାରେ ଏକ ଲଜ୍ଜାଜନକ କଥା ଗୋପୀଙ୍କ ମୁଖରୁ ଶୁଣିବାକୁ ମିଳେ। କିନ୍ତୁ ତାହା ଦୈହିକ ସମ୍ପର୍କ ନୁହେଁ ଏକ ସ୍ୱପ୍ନ। ଏଠାରେ ଶ୍ରୀକୃଷ୍ଣଙ୍କ ପ୍ରତି ନିଜର ଦୁଃଖ ଜଣାଇ ଶୁଭାଶୀଷ ଜଣାଇଛନ୍ତି। ଶୁଣ ଭ୍ରମର, କୃଷ୍ଣ ମଥୁରାରେ ଅବସ୍ଥାପନ କଲେ, ଭଲରେ ଅଛନ୍ତି ତ, ଆଉ ପିତା ମାତାଙ୍କ କଥା ପଚାରିଛନ୍ତି କି ? ଆମ୍ଭମାନଙ୍କ କଥା ଶୁଣି ମଥୁରାକୁ ପ୍ରତ୍ୟାବର୍ତ୍ତନ କଲେ। ଉଦ୍ଧବ କ'ଣ ଦେଖିଲେ। କୃଷ୍ଣର ତହିଁ ଦୃଢଭାବ ଗୋପୀଙ୍କର ଦେଖିଲା ଉଦ୍ଧବ। ଏଠାରେ ଗୋପୀମାନଙ୍କର ନବଧା ଭକ୍ତି ମଧ୍ୟରୁ ପ୍ରେମ ଭକ୍ତି ସର୍ବଶ୍ରେଷ୍ଠ ବୋଲି ଉଦ୍ଧବ ବୁଝିବାକୁ ପାଇଲେ। ଜଣେ ଗୋପୀ ଶ୍ରୀକୃଷ୍ଣଙ୍କର ବର୍ଣ୍ଣନା ଯାହା କରିଛନ୍ତି ତା ଷୋଳସହସ୍ର ଗୋପୀମାନଙ୍କର ପ୍ରେମଭକ୍ତି ସପକ୍ଷରେ ମତବାଦ। କାରଣ ଯେ ଯାହା ଭାବ ଅର୍ଥ ଜାଣି-ଭାବେ ଭାଳନ୍ତି ସର୍ବପ୍ରାଣୀ।

## ଭାବକୁ ନିକଟ ଅଭାବକୁ ଦୂର - ୧

ଯାକର ଥାଇ ଅର୍ଥ ଲାଭ ତାବତ ଥାଇ ପ୍ରିୟଭାବ। ସ୍ୱାର୍ଥ ସହିତ ସମ୍ପର୍କର ସମ୍ବନ୍ଧ କ୍ଷଣସ୍ଥାୟୀ, ଚିରସ୍ଥାୟୀ ନୁହେଁ। କାରଣ ଏହା ଉଦ୍ଦେଶ୍ୟମୂଳକ। ଯଦି

ଉଦ୍ଦେଶ୍ୟପୂର୍ଣ୍ଣ ନହୁଏ, ପୂର୍ବ ସମ୍ପର୍କିତ ଭାବର ମୂଳଉତ୍ପାଦନ ହେବାଟା ସ୍ୱାଭାବିକ କାରଣ ଏହା ପ୍ରାକୃତିକ । ମାୟା ମମତା-ସ୍ନେହ ବିଜଡିତ । ଉଦ୍ଦେଶ୍ୟ ପ୍ରଣୋଦିତ ଭାବ ହିଁ ଭାବ ନୁହେଁ, ଏହା ଅଭାବରେ ରୂପାନ୍ତରିତ ହେବା ସ୍ୱାଭାବିକ । କିନ୍ତୁ ଉଦ୍ଧବ ଗୋପପୁର ଗମନ ସମୟରେ ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଯେଉଁଭାବ ଉଦ୍ଦିଷ୍ଟ, ତାହାହିଁ ପ୍ରେମଭାବ ବା ପ୍ରେମଭକ୍ତି । ଗୋପୀମାନଙ୍କର ଅବସ୍ଥା ଓ କଥୋପକଥନ ଭାବକୁ ଅନୁଧ୍ୟାନ କରି ସାରିବା ପରେ, ଉଦ୍ଧବ ଗୋପୀମାନଙ୍କୁ ଆଶ୍ୱାସନାବାଣୀ ଶୁଣାଇ ଆନନ୍ଦିତ କଲେ । ପୂର୍ବରୁ ଉଦ୍ଧବ କେବେ ଗୋପପୁରକୁ ଆଗମନ କରି ନାହାନ୍ତି । ତେବେ ସେ ଗୋପଲୀଳା ବିଷୟରେ ଗୋପୀ-ଗୋପାଳଙ୍କ ଠାରୁ ଶୁଣିଲେ । ଗୋପୀମାନଙ୍କୁ ଧନ୍ୟ ଧନ୍ୟ ବୋଲି ଉଚ୍ଚାରଣ କରିଛନ୍ତି । କାରଣ ଯାହାଙ୍କୁ ପାଇବା ପାଇଁ ବ୍ରତ ସାଧନ-ଦାନ-ତପ-ହୋମ-ଧ୍ୟାନ-ସଂଯମ-ଯୋଗ-ସତକର୍ମ ଦ୍ୱାରା ଯାହା ପ୍ରାପ୍ତ ହେବା ଅସମ୍ଭବ । କିନ୍ତୁ ବିଷ୍ଣୁର ଭକତି ସାଧନ-ଏଣୁ ନିର୍ମଳ ତୁମ ମନ, ଏହା-ହିଁ ପ୍ରେମଭକ୍ତିର ଚିହ୍ନ । ସ୍ୱାର୍ଥ ବିଜଡିତ ସାଧନା । ବିଷ୍ଣୁରେ ଭକତି ତୁମର-ମନ ମାନବେ ଅଗୋଚର । କାରଣ ଏମାନେ ସାଧାରଣ ମନୁଷ୍ୟ, ସେମାନେ ଜାଣନ୍ତି ନାହିଁ । କ'ଣ କ'ଣ ? ମନୁଷ୍ୟ ଜନ୍ମ ଏବେ ଭାବ-ଅର୍ଥାତ୍ ପଶୁ-ପକ୍ଷୀ-ଜଳଚର ଜୀବଜନ୍ତୁ ନହୋଇ ସେହି ଆତ୍ମା ମନୁଷ୍ୟ ଶରୀରେ ଅବସ୍ଥାନ କରିଛି କାହିଁକି ? କାରଣ ଏହି ଶରୀର ବହନ କରେ, ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ ଦେଖି ସନ୍ତୋଷ ଭଗବାନ, କିନ୍ତୁ ଏହି ଜ୍ଞାନ ଯେଉଁ ପାଇଁ ଉଦ୍ଦିଷ୍ଟ ତାହା ମନୁଷ୍ୟ କରେ ନାହିଁ, କିନ୍ତୁ ଗୋପୀମାନଙ୍କ ଦ୍ୱାରା ସମ୍ଭବ ହେତୁ । ସେମାନଙ୍କ ଜନ୍ମ ଧନ୍ୟ-ଧନ୍ୟ । ଏହି ଭାବ ହିଁ କୃଷ୍ଣଭାବ, ତନ୍ମୟଗତି ଦେହ ଭାବ, ସୁଜନ ଜନର ବାନ୍ଧବ । କୃଷ୍ଣ ମୟ ଏ ଦୁନିଆ ଏ ସଂସାର ସାରା, ବିଦ୍ୟମାନ, ଯେ ଏ କଥାକୁ ହୃଦୟଙ୍ଗମ କରନ୍ତି, ସେହି ହିଁ ସୁଜନ । କୃଷ୍ଣ ହିଁ ତା'ର ବାନ୍ଧବ । ଗୋପୀମାନଙ୍କ ମଧ୍ୟରେ ଗୋଟିଏ ସନ୍ଦେହ ଆସିଛି, ସେହି କଥା ଉଦ୍ଧବଙ୍କୁ ପ୍ରଶ୍ନ କରିଛନ୍ତି । ହେ ଉଦ୍ଧବ ! ବନ୍ଧୁହୀନ ବାନ୍ଧବକର ବନ୍ଧୁ କିଏ ? ଜଗବନ୍ଧୁ ପରି ଜଣେ ସାମନ୍ତ / ନାହିଁ ନାହିଁତ । ଚଉଦ ଭୁବନ ବାରତା ଜାଣନ୍ତି, ଚକ୍ରରେ ଛେଦନ୍ତି ଆରତ । ଗୋପୀମାନଙ୍କର ବିଶ୍ୱାସ ଏହି ଧରଣର ଭକତିଭାବ । ଏମନ୍ତଭାବ କୃଷ୍ଣ ତହିଁ-ଦେବେ ପାଇବେ ଅବା କାହିଁକି ? ଉଦ୍ଧବ ଆଶ୍ଚର୍ଯ୍ୟ ହୋଇ ସେହି ଗୋପୀ ମାନଙ୍କର ଶ୍ରୀକୃଷ୍ଣ ପ୍ରତି ଯେଉଁ ପବିତ୍ର ସ୍ନେହଦ୍ୱାରା ବନ୍ଧନର ବିଶ୍ଳେଷଣ ହିଁ ତୁମ୍ଭର ହରିଭାବ ଦେଖି ନିର୍ମଳ କଲି ଚର୍ମ ଆଖି, ଅର୍ଥାତ୍ ଦିବ୍ୟଚକ୍ଷୁରେ ଭଗବାନଙ୍କ ପ୍ରେମ ଭକ୍ତମାନଙ୍କର ଆଚରଣ ଯେ ଏତେ ବିଶୁଦ୍ଧ ଉଦ୍ଧବ ଚିନ୍ତା କରିପାରି ନଥିଲେ ।

ନଦୀ ତା'ର ଉତ୍ପତ୍ତି ସ୍ଥଳରୁ ବାହାରି କେତେ ବାଧାବିଘ୍ନକୁ ଅତିକ୍ରମ କରି ଯେତେବେଳେ ସମୁଦ୍ର ସହ ମିଶିଯାଏ, ନଦୀ ଯେଉଁ ଆନନ୍ଦ ପାଏ ଠିକ୍ ସେହିପରି ଉଦ୍ଧବ, ଗୋପାଙ୍ଗନା ମାନଙ୍କ ସହ ମିଶିଯିବା ଦ୍ୱାରା ସ୍ୱୟଂ ଭଗବାନଙ୍କୁ ଅନୁଭବ କରି ପାରିଛନ୍ତି । ନିଦ୍ରା ବିଯୋଗେ ପୁରୁଷକୁ ଏ ମାୟା ନଲାଗେ ତାହାକୁ । ପାଞ୍ଚଗୋଟି ଇନ୍ଦ୍ରିୟଙ୍କ ସନ୍ତୁଷ୍ଟିକରଣ ପାଇଁ ମନ ମଧ୍ୟରେ ତାହା ବିଭିନ୍ନ ଚିନ୍ତାଧାରାର ବଶବର୍ତ୍ତୀ କରାଏ । ଯାହାକୁ ନିଦ୍ରା ଆସେନାହିଁ ତାହାକୁ ସ୍ୱପ୍ନ ଆସେ ନାହିଁ ଅର୍ଥାତ୍ ଯେତେବେଳେ ନିଦ୍ରା ଆସେ, ଯେତେବେଳେ ସ୍ୱପ୍ନ ଆସେ, ଯେତେବେଳେ ମାୟା ଆସେ । ଏ ଭାବ ଯାହାର ନାହିଁ, ସଂସାର ତାକୁ ନଲାଗଇ । ତେଣୁ ହେ ଗୋପୀଗଣ ! ତୁମକୁ ମୋର ମାୟା ନାହିଁ । ତେଣୁ ରହିଲୁ ଦୂରେ ହୋଇ । ଅର୍ଥାତ୍ ଗୋପପୁର ଛାଡି ମଥୁରାପୁରରେ ରହିଲୁ । କଥୋପକଥନ ଛଳରେ ଗୋପୀମାନେ ଉଦ୍ଧବଙ୍କ ଠାରୁ ଉତ୍ତର ଚାହୁଁଛନ୍ତି । ଉଦ୍ଧବ କହ ନିଶ୍ଚେ ସତ୍ୟ ଗୋପେ କି ଆସିବେ ଅନନ୍ତ ? ଆଶା ନାହିଁ । ମାମୁଁ କଂସକୁ ନିଧନ କରି ସେହି ରାଜ୍ୟରେ ରାଜା ହେଲେ ଏବଂ ରାଜକନ୍ୟାକୁ ବିବାହ କରି ମଥୁରାରେ ସୁଖରେ ରହିଲେ । ହେ ଉଦ୍ଧବ ! ଆଉ କାହିଁକି ଗୋପକୁ ଆସିବେ ? ଯାହାଙ୍କ ଘରଣୀ ଲକ୍ଷ୍ମୀ ସେ କାହିଁକି ବନଚାରିଣୀକୁ ଚାହିଁବେ । ଶ୍ରୀକୃଷ୍ଣ ଗୋପପୁରର ଗୋପୀମାନଙ୍କ ସହିତ ଯେଉଁ ଯେଉଁ ସ୍ଥାନରେ ଲୀଳା କରୁଥିଲେ ଉଦ୍ଧବଙ୍କୁ ସେହି ସେହି ପବିତ୍ରସ୍ଥାନରୁ ଦର୍ଶନ କରାଇଛନ୍ତି । ନନ୍ଦପୁର-ନନ୍ଦୀ-କାନନ-ଗିରିତଟ-କୁସୁମ କ୍ଷେତ୍ର । କୃଷ୍ଣ ଭାବରେ ଗୋପୀମାନେ ବିହ୍ୱଳ ହୋଇଥିବାର ଉଦ୍ଧବ ସମ୍ପୂର୍ଣ୍ଣ ଅନୁଭବ କରିଛନ୍ତି । କୃଷ୍ଣପ୍ରାଣ ଗୋପୀଗଣ ଆଉ ଏ ସଚରାଚର ଜଗତରେ କିଛି ଜାଣନ୍ତି ନାହିଁ । ସବୁଠାରେ କୃଷ୍ଣଙ୍କ ଉପସ୍ଥିତିକୁ ଜାଣନ୍ତି । ତେଣୁ ଗୋପୀଙ୍କ କୃଷ୍ଣ କୃଷ୍ଣ ଭାବ ଆନନ୍ଦେ କହଇ ଉଦ୍ଧବ । ଗୋପୀଙ୍କ ପାଦତଳେ ପଡି କହେ ଉଦ୍ଧବ ହାତଯୋଡି । ସାଧାରଣ ଚଳିନ ଅଛି କେହି ବନ୍ଧୁ ବା ବାନ୍ଧବ ଅଥବା ପରିଦର୍ଶକ ଅଥବା ଅତିଥିଙ୍କ ପ୍ରତ୍ୟାଗମନ ସମୟରେ ବିଦାୟ କାଳରେ ଦୁଃଖ ପ୍ରକାଶ କରାଯାଇଥାଏ । ଉଦ୍ଧବ ବର୍ତ୍ତମାନ ଗୋପପୁରରୁ ବିଦାୟ ନେଇ ମଥୁରାକୁ ଗୋପୀମାନଙ୍କ ଠାରୁ ସନ୍ଦେଶ ନେଇ ପ୍ରତ୍ୟାଗମନ କରୁଛନ୍ତି । ହେ ଗୋପୀଗଣ ଏବଂ ଗୋପବାସୀ ତୁମ୍ଭମାନଙ୍କର ଜନ୍ମ ଏହି ପୁରରେ, ତୁମ୍ଭମାନେ ଧନ୍ୟ । ଯାହାକୁ ଦେବତାମାନେ ନଜାଣନ୍ତି, ତୁମେ ମାନେ ତାହାଙ୍କୁ ପାଇଛ । ଖାଲି ସେତିକି ନୁହେଁ । ରାମ ଉତ୍ସବରେ ଏକମେଳ କୃଷ୍ଣ ସଙ୍ଗରେ କଲ କେଳି । ସ୍ତନ ବଦନ କରେ ଚାପି ଛାଡିଲ ତିନିତାପ ଗୋପୀ । ଜନ୍ମ

ମୃତ୍ୟୁ ପୁନର୍ଜନ୍ମ । ଅଭୟ ପଞ୍ଜରରେ ସ୍ଥାନ ପାଇଲେ । ତାଙ୍କର ପାଦପଦ୍ମକୁ ହୃଦୟରେ ବହନ କଲ । ଗୋପପୁରର ନଦି ପର୍ବତ ବନ ଦେଶ, ଚାରିଆଡେ ସେହି ମୁରଲୀର ଧ୍ୱନୀ ଶୁଭୁଛି । ଶେଷରେ ଏଣୁ ସେ କୃଷ୍ଣ ଭାବ ଜାଣି ମନ କହିଇ ପୁଣ ପୁଣି । ଦେଖିଣ ପାଦପଦ୍ମ ଛାୟା କେମନ୍ତେ ପାଶୋରିବୁ ତାହା । ସେ ଯେ ଅନାଥ ନାଥ ହରି-ଆରତ ଭଞ୍ଜନ ମୁରାରୀ । ଆମ୍ଭର ଦେଖୁଅଛ ଦୁଃଖ-ଗୋପୀଙ୍କୁ ଶୋକଜଳୁ ରଖ । ଯଦୁପତି କୋ ଗତ୍ୱ । ମଥୁରାପୁରୀ । ଆଉ ଗୋପପୁରକୁ ଶ୍ରୀକୃଷ୍ଣ ଫେରି ନାହାନ୍ତି କିନ୍ତୁ ଗୋପୀମାନେ..... ।

## କୁବୁଜା - ୧

କୃଷ୍ଣଙ୍କୁ ମାଗିଥିଲା ବର ଭୋ ନାଥ ଯିବୁ ମୋର ଘର । ପୁରାଣ ପ୍ରସିଦ୍ଧ କୁବୁଜାକୁ ଅନୁଗ୍ରହ କରିଥିବା ବିଷୟ ଭକ୍ତକବି ନିତ୍ୟାନନ୍ଦ ଦାସଙ୍କ 'ଆରତ ଧ୍ୱଂସନ' ଜଣାଣରେ ବର୍ଣ୍ଣିତ । ବଳେ ଯାଚି ଧନ, ଅନ୍ଧକୁ ଲୋଚନ, ତୁମେ ଗୋପଦାଣ୍ଡେ ଦେଲପରା । ଡାକି ଅସୁନ୍ଦର କୁଜୀକି ସୁନ୍ଦର, ତୁମେ କି ନକଲ ଅପସରା । ସେତ ଭାବ ବିନୋଦିଆ, କିଏ କ'ଣ ଆଶା କରେ ସେ ହିଁ ଜାଣନ୍ତି କିନ୍ତୁ ଦୁନିଆକୁ ଅଜଣା । ସେ ହେଉଛନ୍ତି ଦୀନ ଦୁଃଖୀର ବନ୍ଧୁ ଜଗବନ୍ଧୁ । ବନ୍ଧୁହୀନ ବାନ୍ଧବର ବନ୍ଧୁ ଜଗବନ୍ଧୁ । ସେଥିପାଇଁ ଭକ୍ତକବି ଦୀନକୃଷ୍ଣ ଦାସ, ଜଗନ୍ନାଥଙ୍କୁ କହନ୍ତି, ଜଗବନ୍ଧୁ ପରି ଜଣେ ସାମନ୍ତ ନାହିଁ ନାହିଁତ । ଚଉଦ ଭୂବନ ଜାଣନ୍ତି, ଚକ୍ରରେ ଛେଦନ୍ତି ଆରତ ।' ଅତଏବ କୁବୁଜୀର ନିମନ୍ତ୍ରଣ ରକ୍ଷା କରିଛନ୍ତି । ଗୋପଦାଣ୍ଡରେ ଫେରୁଥିବା ସମୟରେ କୁବୁଜୀର ଆତିଥ୍ୟ ରକ୍ଷା କରି । ତାହାର ଭାବ ହୃଦେ ବହି । ଉଦ୍ଧବ ସଙ୍ଗେ ସଙ୍ଗେ ହୃଷି କେଶ, କୁବୁଜା ମନ୍ଦିରେ ପ୍ରବେଶ । କିନ୍ତୁ ଜଗନ୍ନାଥ ଦାସ କୁବୁଜା ଗୃହରେ ପ୍ରବେଶ ଉଲ୍ଲେଖ କରିବାର ଏକ ବିଶିଷ୍ଟ କାରଣ ଅଛି । ଯେହେତୁ ଦାସେ ଜଗନ୍ନାଥପ୍ରାଣ, ତାଙ୍କୁ ଅର୍ଥାତ୍ ଭଗବାନ ଶ୍ରୀକୃଷ୍ଣଙ୍କୁ ସାଧାରଣ ମଣିଷ ହିସାବରେ ଗ୍ରହଣ କରିବାକୁ କୁଣ୍ଠାବୋଧ କରିଛନ୍ତି । କାରଣ ଦେବତା ମନ୍ଦିର ଯେଉଁଭଳି ସାଜସଜ୍ଜା ହୁଏ, କୁବୁଜୀ ସେଥିରେ ଅବହେଳା କରି ନାହାନ୍ତି । ସୁଗନ୍ଧ ଧୂପଦୀପ ଦାସ-ଅମୂଲ୍ୟ ମଣିତ୍ରାସ । ଗନ୍ଧ ଚନ୍ଦନ ପରିମଳ, ପବନ ବହଇ ଶୀତଳ । ମୁକୁତା ପ୍ରବାଳ ଖଞ୍ଜଣି ଉପରେ ଚନ୍ଦ୍ରାତପ ଟାଣି । ରତ୍ନପଲଙ୍କ ପଡା ରତ୍ନପାଦକା ସୁନାପୀଡା । ସୁଗନ୍ଧ ଧୂପ ଥୋଇ ତଳେ-ଉପରେ ଲମ୍ବପୁଷ୍ପମାଳେ । କବି ପ୍ରଭୁ ଜଗନ୍ନାଥଙ୍କ ମନ୍ଦିର ସହିତ କୁବୁଜୀର କୁଟୀର ଓ ପ୍ରଭୁ

ଜଗନ୍ନାଥଙ୍କ ପୂଜା ସାମଗ୍ରୀ ସାଜସଜ୍ଜା ସହିତ କୁବୁଜୀର ସାଜସଜ୍ଜାକୁ ସୁନ୍ଦର ଭାବରେ ତୁଳନା କରିଛନ୍ତି । ଏହି ସମୟରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବ ସହ ଦ୍ୱାରଦେଶରେ ଆର୍ବିଭାବ ହୋଇଛନ୍ତି । ହରିବିଜୟ ଦ୍ୱାରେ ଦେଖି, ସମ୍ଭ୍ରମରେ ଆସନ ଉପେକ୍ଷୀ । ସଙ୍ଗତେଘେନି ସଖୀଗଣ-ପୂଜିଲା ଗୋବିନ୍ଦ ଚରଣ । ଏଠାରେ ଜଗନ୍ନାଥ ଦାସ ଓଡ଼ିଆ ଘରର ଚାଲିଚଳନୀ ପ୍ରଥାକୁ ବ୍ୟବହାର କରିଛନ୍ତି । ଏହାର ନାମ ଜଗନ୍ନାଥ ସଂସ୍କୃତି । ସାଧାରଣତଃ କେବେ କେବେ ଆମ୍ଭମାନଙ୍କ ଗୃହକୁ ଅତିଥି ଆଗମନ ଥିଲେ, ଗୃହକର୍ତ୍ତାଙ୍କ ଦ୍ୱାରଦେଶରେ ଅପେକ୍ଷାରତ ସମୟଟା ଯେପରି ଦୀର୍ଘତା ଭଳି ଅନୁଭବ କରାଯାଏ ଠିକ୍ ସେହିପରି ମନ୍ଦିର ସାଜସଜ୍ଜା ପରେ କୁବୁଜା ଦ୍ୱାର ଦେଶରେ ଅପେକ୍ଷାରତ । ଠାକୁରଙ୍କର ସମୟ ଜ୍ଞାନର ଅଭାବ । କୃଷ୍ଣ ଆଗମନ ପଥ ଚାହିଁ-କୁବୁଜା ଦେହେ ଜ୍ଞାନ ନାହିଁ । ସେ ଧୈର୍ଯ୍ୟହରା ହୋଇଛି । ନିମିଷ ଯୁଗପ୍ରାୟ ମଣି-ରଜନୀ ଦିବସ ନ ଗଣି । ଏହା ହିଁ ସାଧାରଣ କଥା ଏଭଳି ହୁଏ କାହିଁକି ? ଷ୍ଟେସନ୍‌ରେ ଗାଡି ଠିକ୍ ସମୟରେ ପହଞ୍ଚିଲେ ମଧ ଯାତ୍ରୀକୁ ବିଳମ୍ବ ଲାଗେ ।

## କୁବୁଜା - ୨

ଭଗବାନ ଶ୍ରୀକୃଷ୍ଣ ଆସନ ଗ୍ରହଣ କଲାପରେ କୁବୁଜୀ ତଳେ ବସି ପାଦପୂଜା କଲେ । ଠାକୁର ବସିଲେ ମନ୍ଦିରରେ କୁବୁଜୀ ଗଲେ ସ୍ନାନ ଉଦ୍ଦେଶ୍ୟରେ । ଆଶ୍ଚର୍ଯ୍ୟ ଲାଗେ କାହିଁକି ? ମନୁଷ୍ୟ ହେଉଛି କପଟୀ । ସେ କପଟ କ'ଣ ଥିଲା, ଏକା ଶ୍ରୀକୃଷ୍ଣ ଜାଣନ୍ତି ଉତ୍ସବର କାରଣ ଜାଣନ୍ତି । କୁବୁଜୀର ଇଛା କ'ଣ ଥିଲା ? ନାରୀମାନେ ନିଜର ସ୍ୱାମୀ ପାଖରେ ସୁନ୍ଦରବନ୍ତ ଅଳଙ୍କାର-ସୁଗନ୍ଧ ବାସନା ଅତର ଇତ୍ୟାଦି ହସଭରା ମୁଖମଣ୍ଡଳରେ ଉପସ୍ଥିତ ହୁଅନ୍ତି । କାରଣ ପୁରୁଷକୁ ତା'ର ଆକର୍ଷଣ କରିବା ହେଉଛି ମୁଖ୍ୟ ଉଦ୍ଦେଶ୍ୟ । କୁବୁଜା ପୂର୍ବରୁ ଅବଗତ ହୋଇଛି, ଗୋପପୁରର ନାରୀମାନେ କିପରି ବନ୍ଦୀ କରିଥିଲେ ପ୍ରେମ ଡୋରିରେ ତାଙ୍କୁ । କିନ୍ତୁ ଗୋପିକା ମାନଙ୍କ ସହିତ ଯେଉଁ ପ୍ରେମଥିଲା, ତାହା କାମନାଯୁକ୍ତ ନୁହେଁ-କାମନା ରହିତ । କିନ୍ତୁ କୁବୁଜୀର ଚିନ୍ତାଧାରା ଯାହାଥିଲା-ହାସ୍ୟବଦନେ କାମଗତି-କଟାକ୍ଷେ ମୋହିଲା ଶ୍ରୀପତି । କୁବୁଜା ଚାହିଁ ବନମାଳୀ ଡାକନ୍ତି । ନିଜେ ଭୂଜତୋଳି । ନବ ସଙ୍ଗମେ ଲଜ୍ଜାପାଇ-କୁବୁଜା ନ ପାରଇ ଯାଇ । କାରଣ କୁବୁଜୀ ତା'ର ମାନସିକ ସ୍ତରରେ କ'ଣ ଇଛାକରେ,

ତାହା କୃଷ୍ଣଚନ୍ଦ୍ର ଜାଣନ୍ତି । ଗୋବିନ୍ଦ ଭୁଜକୁ ଧରି ପଲଙ୍କରେ ବସାଇଲେ । କୁବୁଜୀ ଘେନି କୋଳେ-ଗନ୍ଧ ଲେପର ହୋଇ ଭୋଳେ । ରମିରେ କମଳାଇ ବର-ଅଶେଷ ବ୍ରହ୍ମାଣ୍ଡ ଠାକୁର । କୁଚ ହୃଦୟ ଚକ୍ଷୁଭରେ-ଆଘ୍ରାଣ କଲା ନାଶା ଦ୍ୱାରେ । ଯେତେ କଲ୍ମଷ ଦେହେ ଥିଲା-ଗୋବିନ୍ଦ ଚରଣେ ମଜ୍ଜିଲା । ଆନନ୍ଦରେ ନିବିଡ ବନ୍ଧନ ସହ ଆଲିଙ୍ଗନ କରିବା ହେତୁ ତା'ର ପୂର୍ବଜନ୍ମର ଯେତେପାପ ହେତୁ ଚଳିତ ଜନ୍ମରେ କୁବୁଜୀ ହେଲା, ତାର ସମସ୍ତ ପାପ ଏବେ ଭଗବାନ ଶରୀରରେ ଲୀନହେଲା । ଜଳ ଯେସନେ ଛାଡେ ପଙ୍କ ତେହ୍ନେ ଛାଡିଲା ମନସ୍ତାପ । ଜଳ ଗୋଳିଆ ହେବାର କାରଣ ମିଶ୍ରିତ ଥାଏ ଦୂଷିତ ମାଟି । ପରବର୍ତ୍ତୀ ଅବସ୍ଥାରେ ତାହା ପଙ୍କରେ ପରିଣତ ହୁଏ, ଫଳରେ ଜଳ ନିର୍ମଳ ଦିଶେ । ଠିକ୍ ସେହିପରି ମନ ମଧରେ ଯେଉଁ ଦୁର୍ବଳତା ବା ଅଭାବ ଥିବା ହେତୁ ମନୁଷ୍ୟ ଦୁଃଖିତ ହୁଏ, ସେଥିପାଇଁ ମନସ୍ତାପ କରିବାକୁ ପଡେ । ଏଠାରେ କୁବୁଜାର ଶରୀର ଗଠନ ଅସାଧାରଣ ଥିବା ହେତୁ ନାରୀ ସମାଜରେ ଘୃଣିତ ହେଉଥିଲା । ଏହାହିଁ ଥିଲା ମୁଖ୍ୟ କାରଣ । କିନ୍ତୁ ତାହା ପୂର୍ବଜନ୍ମର କର୍ମଫଳ ବା ପାପଫଳ ଅଥବା ଅଭିଶାପଗ୍ରସ୍ତ ହେତୁ ଘଟିଥିଲା । ଏ କଥା କୁବୁଜୀର ଚିନ୍ତାଧାରାର ବାହାରେ ଥିଲା କିନ୍ତୁ ତା'ର ଇଚ୍ଛାଥିଲା ଶ୍ରୀକୃଷ୍ଣଙ୍କ ଆଶୀର୍ବାଦ ଫଳରେ ଏକ ଦିବ୍ୟନାରୀ ହିସାବରେ ସମାଜରେ ପରିଗଣିତ ହେବ । ଏହା ହିଁ ତା'ର ଭାଗ୍ୟଫଳ । ସର୍ବଶେଷରେ ଶ୍ରୀକୃଷ୍ଣଙ୍କୁ ଅନୁରୋଧ ଜଣାଏ । ଭୋନାଥ ରହ କିଛିଦିନ-ତୋଷ ନୋହିଲା ମୋର ମନ । ଭକ୍ତର ଇଚ୍ଛାପୂର୍ଣ୍ଣ କରିବା ଭଗବାନଙ୍କ ଇଚ୍ଛାହେତୁ, ଶୁଣି ସାନନ୍ଦେ ଗୋପୀନାଥେ-ତହିଁ ରହିଲେ ଦିନା କେତେ । କାମନା ପୂର୍ଣ୍ଣ କରି ତା'ର-ତହିଁ ଚଳିଲେ ଦାମୋଦର । ଏଭଳି ବନ୍ଧୁ କେହି ନାହାନ୍ତି, ସେହି ହିଁ ଜଗବନ୍ଧୁ । ତାକି ଅସୁନ୍ଦର କୁଜୀଳି ସୁନ୍ଦର, ତୁମେ କି ନକଲ ଅପସର ।

## ମୂଳୁ ମାରିଲେ ଯିବ ସରି ! - ୧

ତା'ପରେ କ'ଣ ହେବ ? ଆଉ କଳି ଉପୁଜିବ ନାହିଁ । ଏ କି ଧରଣର ନକାରାତ୍ମକ ଚିନ୍ତାଧାରାର ବଶବର୍ତ୍ତୀ ହୋଇଥିଲା ଦ୍ୱାପର ଯୁଗର କାହାଣୀ କଂସ ଚରିତ୍ରରେ । ସେଥିପାଇଁ ଆକାଶବାଣୀ ଶୁଣି କଂସ ଭଗ୍ନୀକୁ ହତ୍ୟା କରିବାକୁ ମନସ୍ଥ କଲା । କିନ୍ତୁ ଏ କଥା ବସୁଦେବ ଏବଂ ଦେବକୀ ମଧ ଶୁଣିବାକୁ ପାଇଥିଲେ ।

ଉପଦେଶ ମଧ ଦେଇଥିଲେ । ଯେଉଁ ସନ୍ତାନ ଅଷ୍ଟମଗର୍ଭରେ ଜନ୍ମଲାଭ କରିବ ହୁଏତ ତାହା ଦ୍ୱାରା କଂସ ନିଧନ ହେବ । କିନ୍ତୁ ପୂର୍ବବର୍ତ୍ତୀମାନେ ଦୋଷୀ ନୁହଁନ୍ତି । କିମ୍ବା ଦେବକୀ ଦୋଷୀ ନୁହେଁ । ତେଣୁ ମୂଳୁ ମାରିଲେ ଯିବ ସରି, ଅର୍ଥାତ୍ ଭଗବାନ ନାରୀକୁ ସନ୍ତାନ ଉତ୍ପାଦନ ଶକ୍ତି ଦେଇଛନ୍ତି । ସେହି ନାରୀକୁ ହତ୍ୟା କରିବାଟା ଠିକ୍ ନୁହେଁ ବୋଲି ଉଭୟ ଦେବକୀ ବସୁଦେବ ଯେଉଁ ଅନୁରୋଧ ମୂଳକ ଉଦ୍ୟମ କରିଛନ୍ତି । ଏହିକଥା ମହାପୁରାଣ ଭାଗବତରେ ଅତିବଡ଼ି ଜଗନ୍ନାଥ ଦାସ ଉଲ୍ଲେଖ କରିଛନ୍ତି । ଗନ୍ତବ୍ୟ ମାର୍ଗରେ ଆହୁରି ଅନେକ ଅନେକ ସକାରାତ୍ମକ ଚିନ୍ତାଧାରା କଂସର ମାନସ ପଟରେ ଉଙ୍କିମାରିଛି । ହତ୍ୟାକଲେ କ'ଣ ହେବ ? ବଞ୍ଚି ରହିବା ପାଇଁ ପାପ କାର୍ଯ୍ୟରେ ଲିପ୍ତ ହେବାଟା କ'ଣ ଠିକ୍ ପଦକ୍ଷେପ ? ପାପ କଲେ ପଶ୍ଚାତାପ କରିବାକୁ ପଡେ । ତାହା ହିଁ ମନସ୍ତାପ । ଜୀବଟିଏ ମାରିଲେ ପାପହୁଏ ଏବଂ ନର୍କଗତି ହୁଏ । ପ୍ରଚଳିତ ଗଣତାନ୍ତ୍ରିକ ଶାସନ କ'ଣ ସେହି ନର୍କରେ ପକାଇ ନଥାନ୍ତା କି ? ନାରୀ ଗର୍ଭସ୍ଥ ନାରୀ-ଶିଶୁ ହତ୍ୟାହେତୁ ବଞ୍ଚିଥିବା ଯାହା ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ଅର୍ଥାତ୍ କ୍ଷତି କରିବା ଅପେକ୍ଷା କ୍ଷତି ସହ୍ୟ କରିବା ବାଞ୍ଛନୀୟ । ଏହା ହିଁ ସଦ୍‌ବୁଦ୍ଧି । ମୃତ୍ୟୁ ଅବଶ୍ୟମ୍ଭାବୀ । ସେହି ମୃତ୍ୟୁର ଆଗମନ ସମୟରେ ଏଭଳି କୁକର୍ମଜନିତ ମଣିଷକୁ ଏହି ଦୁନିଆ ତା'ର ସମସ୍ତ ଅତୀତକର୍ମ ପାଇଁ ନିନ୍ଦା କରେ । ଇହଲୋକରେ ଅପଯଶ ଏବଂ ମୃତ୍ୟୁପରେ ନର୍କଦ୍ୱାର ଉନ୍ମୁକ୍ତ ଥାଏ । ତେଣୁ ମହାରାଜ କଂସ ରଥାରୁଢ ସମୟେ ଯେଉଁ ଚିନ୍ତା କରିଥିଲେ ସେଥିରୁ ନିବୃତ୍ତ ହେଲେ ମଧ ତାଙ୍କର ବୃହତ୍ତର ସ୍ୱାର୍ଥ ତାଙ୍କୁ ପଥଭ୍ରଷ୍ଟ କଲା । ସେହି ନାକରାତ୍ମକ ଚିନ୍ତାଧାରା ଥିଲା 'ମୂଳୋତ୍ପାଟନ' । ଏହି ଶବ୍ଦଟି ଯୁଗେ ଯୁଗେ ପ୍ରଚଳିତ । ଏହାକୁ ମନୁଷ୍ୟର କ୍ରୋଧ ବୋଲି କୁହାଯାଏ । କ୍ରୋଧ ଲୋଭରୁ ଉତ୍ପନ୍ନ । ଏହା ଏକ କ୍ଷତି ସାଧକ ଶବ୍ଦ । ଯେଭଳି ଘରେ ମୂଷାମାନେ ଉତ୍ପାତ କଲେ ଘରେ ନିଆଁ ଲଗାଇବା, ଘର ବରଂ ପୋଡିଯାଉ ମୂଷା-କେଞ୍ଚାଏ ପାଆନ୍ତୁ । ଏହା ଏକ ସାମୟିକ ଉତ୍ତେଜନା । ଯେଉଁଘରେ ନିଜେ ମନୁଷ୍ୟ ବାସକରେ ସେହିଘରେ ନିଆଁ ଲଗାଏ, ତେବେ ପୁନରାୟ ଘର ତିଆରି କଲେ ମୂଷାମାନେ ବାସ କରିବେ ନାହିଁ ? ତେବେ କ'ଣ ପୁନରାୟ ଘରେ ନିଆଁ ଲଗାଇଦେବା ଉଚିତ ହେବ କି ? ସେହିଭଳି, ସ୍ୱାମୀ ବରଂ ମରୁ ସଉତୁଣୀ ରାଣ୍ଡହେଉ । ଯଦି ସଉତୁଣୀକୁ ଦଣ୍ଡ

ଦେବାକୁ ଇଚ୍ଛା, ଅନ୍ୟପଥ ଅନ୍ୱେଷଣ କରିବା ବାଞ୍ଛନୀୟ କିନ୍ତୁ ସେଥିପାଇଁ ନିଜର ସ୍ୱାମୀକୁ ହତ୍ୟା କରିବାଟା ବୋକାମୀ ନୁହଁ କି ? ଶତ୍ରୁସାଧନ କରିବା ଏହା ହିଁ ଉଚିତ ପଥ ଏବଂ ପନ୍ଥା ନୁହେଁ। ଆଜିକାଲି ଏକପାଖିଆ ଗୋଟିଏ ପ୍ରେମ-ପ୍ରେମିକ-ପ୍ରେମିକାଙ୍କ କଥା ଶୁଣିବାକୁ ମିଳୁଛି। ପ୍ରେମିକ କୌଣସି ସୁନ୍ଦର ଚେହେରା-ସୌଷ୍ଠିକ ଶରୀର ଗଠନ-ଉତ୍ତାଳ ମନଲୋଭା। ଯୌବନକୁ ଲକ୍ଷ୍ୟ କରି ଆତ୍ମହରା ହୋଇ ପାଗଳ ହୁଅନ୍ତି। ଅଲାଜୁକ ପଣିଆ ହେତୁ ରାସ୍ତା-ଘାଟ-ବଜାର-ସହର-ସ୍କୁଲ୍-କଲେଜରେ ଦେଖି ଦେଖି ଉନ୍ମତ୍ତ ହୋଇପଡି ପ୍ରେମ ନିବେଦନ କରନ୍ତି। ଝିଅଟି ଅନନ୍ୟୋପାୟ କେତେବେଳେ ହସିଦିଏ ବା ବାଧହୋଇ ଧାଡିଏ କ'ଣ କହିଦିଏ ବା ଚକୋଲେଟ୍ ନିଏ ଏହାର ଅର୍ଥ ନୁହେଁ ଝିଅଟି ସେହି ପୁଅକୁ ପ୍ରେମ କରିବାକୁ ଏକମତ ହେଲା। ସର୍ବଶେଷରେ ଏକ ପାଖିଆ ପ୍ରେମିକ ଝିଅଟିର ରୂପକୁ ବିକୃତ କରିହେବା ପାଇଁ ଏସିଡ୍ ମାଡ କରିଥାଏ। ପାଗଳ ମନ ଶାନ୍ତ ହୁଏ। ଅର୍ଥାତ୍ ସେ ଯଦି ସେହି ଝିଅକୁ ପାଇ ନପାରିଲା ବା ଉପଭୋଗ କରି ନପାରିଲା, ଆଉ କେହି ଉପଭୋଗ ନକରନ୍ତୁ। ଏଥିପାଇଁ କ'ଣ ଦୁନିଆ କ୍ଷମାଦେବ ? ମହାରାଜ କଂସ ହୁଅନ୍ତୁ ବା ମୂଷା ପାଇଁ ଘରପୋଡା ମଣିଷ ହେଉ ଅଥବା ସଉତୁଣୀ ପାଇଁ ନିଜ ସ୍ୱାମୀକୁ ବିଷଦେଇ ମାରିଥିବା ନାରୀ ହେଉ କିମ୍ବା ବିଫଳ ପ୍ରେମିକ ହୁଅନ୍ତୁ ଏମାନଙ୍କର ନକାରାତ୍ମକ କାର୍ଯ୍ୟକଳାପ ପାଇଁ ଦଣ୍ଡ କ'ଣ ଥାଏ ? କଂସକୁ ଯେଉଁଭଳି ଶୂନ୍ୟଶବ୍ଦ ହୋଇଥିଲା 'ରେ-ରେ ଅସୁର କଂସ ଶୁଣ-ନଜାଣୁ ଆପଣା ମରଣ। ପ୍ରତ୍ୟେକ କର୍ମ ପାଇଁ ଉପଯୁକ୍ତ ଫଳ ଥାଏ ଅର୍ଥାତ୍ ମନୁଷ୍ୟ ଯାହା ଆଜି କରେ ତା'ର ସୁଫଳ ବା କୁଫଳ ଦିନେ ମିଳେ। ତାହା ସମୟ ସାପେକ୍ଷ। ଏହା ହିଁ ଲୋଭ-ଭୟ-କ୍ରୋଧ-ଇର୍ଷା ଜନିତ କ୍ଷଣିକ କୋପଭାବ। ଅତଏବ ମୂଳୋତ୍ପାଟନ ଶବ୍ଦର ଅର୍ଥ ସର୍ବଦା ନକାରାତ୍ମକ। ଏହା ସହିତ ନିଜର ଗୋଟିଏ ଅନୁଭୂତି ଶୁଣିବା ହେଉ। ସହାନୁଭୂତି ଶବ୍ଦର ଅର୍ଥ ସକରାତ୍ମକ ନୁହେଁ। ଅଜ୍ଞାନ କୁଳଶୀଳସ୍ୟ..... ବାସ ନ ଦେୟଂ। କୌଣସି ବ୍ୟକ୍ତି ବିଷୟରେ ସମ୍ପୂର୍ଣ୍ଣ ଅଜଣା କିନ୍ତୁ ତା'ର ସାହାଯ୍ୟ ଆବଶ୍ୟକ। ସେ ସ୍ଥଳରେ କର୍ତ୍ତବ୍ୟ କ'ଣ ? ଏହିଭଳି ଏକ କଥାକୁ ଆଶ୍ରୟ କରାଗଲେ, ସେଥିରୁ ଗୋଟିଏ ସୁନ୍ଦର କଥା ଜାଣିବାକୁ ମିଳେ, ବାପ ଖାଇଥିଲା ତାଳ-ପୁଅକୁ ହୋଇଲା କାଳ। ସସେମିରା ଗଳ୍ପରେ ଭାଲୁର ସାହାଯ୍ୟ ଓ ସହାନୁଭୂତି କ'ଣ ଠିକ୍ ନୁହେଁ ? ଶରଣାର୍ଥୀର ଭୂମିକା କ'ଣ ଥିଲା ? ଯଦି ଭାଲୁ ତଳେ ପଡି ଯାଇଥାନ୍ତା, ତେବେ ? ଯଦି ସମ୍ଭବହୁଏ, କୌଣସି

ନିରାଶ୍ରୟକୁ ଆଶ୍ରୟ ଦେବାକୁ ହେଲେ, କେବଳ ତାହା ସାମୟିକ ସମୟ ସୀମାରେ ଆବଦ୍ଧ ହେବା ଉଚିତ । ତା ପରେ ପରେ ପର କରିଦେବାଟା କର୍ତ୍ତବ୍ୟ । ଶରଣାର୍ଥୀର ସଂଜ୍ଞା ସ୍ଥାୟୀ ନୁହେଁ । କଥାଟି ଆମର ଅଛି ଗୋଟିଏ ଶବ୍ଦରେ, ମୂଳୋତ୍ପାଟନ । ଜଣେ ବିଧବା-ନିରାଶ୍ରୟା-ଅସହାୟାକୁ ମହନ୍ତ ବିହାରୀ ଦାସ କିଛିକାଳ ରହଣି ପାଇଁ ବ୍ୟବସ୍ଥା କଲେ, ପରେ ପୁତ୍ର ପୁତ୍ରବଧୂଙ୍କର ବାସଖଣ୍ଡିକ ନଦୀପଥର ଗତିପରିବର୍ତ୍ତନ ହେତୁ ଭୂ-ସମ୍ପତ୍ତି ହରାଇ ମାଆର ସୁପାରିଶ ହେତୁ ମହନ୍ତଙ୍କ ଆଶୀର୍ବାଦ ଲାଭକଲେ ଏବଂ କିଛିକାଳ ରହଣି ମଧ୍ୟରେ ବିଧବା ବୃଦ୍ଧାଗଲେ, ପୁତ୍ର ଗଲେ । ବାକି ରହିଲେ ବିଧବା ବୋହୁ ଓ ନାତି । ସମୟ ବଦଳିଗଲା । ପ୍ରକୃତ ଆଶ୍ରୟ ଦାତା ଏବଂ ଆଶ୍ରିତା ଏବଂ ପୁତ୍ର ଇହଧାମ ତ୍ୟାଗ ପରେ ନାତି ଉକ୍ତ ସ୍ଥାନ ପରିତ୍ୟାଗ ନକରି ଜବରଦଖଲ କଲେ । ମିଥ୍ୟା ଦଲିଲ-ତହସିଲର ବଳରେ ଥାନା ଅଧିକାରୀ ହସ୍ତଗତ ଏବଂ ଗୁଣ୍ଡାଙ୍କ ଜୁଲମ କ'ଣ ? ଜେଜବାପା ଖାଇଥିଲେ ତାଳ-ନାତିକୁ ହୋଇଲା କାଳ । ଏହା ହିଁ ସହାନୁଭୂତିର ଫଳ । ଘଟଣାଟିକୁ ଅଧିକ ବିସ୍ତାର ନକରି ମୂଳୋତ୍ପାଟନ ଶବ୍ଦର ବ୍ୟବହାରର ଉଦ୍ଦେଶ୍ୟ ଉପରେ ଜୋର ଦିଆଯାଇଛି ।

## ମୂଳୁ ମାରିଲେ ଯିବ ସରି ! - ୨

ଆଶ୍ରୟଦାତାର ତୃତୀୟ ପିଢ଼ି ସହିତ ଆଶ୍ରୀତାର ତୃତୀୟ ପିଢ଼ିର ଅସ୍ଥାୟୀକାଳୀନ ବାସସ୍ଥାନର ସ୍ଥାୟୀତ୍ୱକରଣ ପାଇଁ ଚାଲିଲା ବଳପ୍ରୟୋଗ ଏକାଦି କ୍ରମେ ବାରବର୍ଷ । ଏଭଳି କ୍ରମେ ବାରବର୍ଷ । ଏଭଳି ଅଯଥା ଘଟଣାରୁ ରକ୍ଷା ମିଳିବ କିପରି ? ଉଭୟ ପକ୍ଷ ଗ୍ରାମର ବିଶିଷ୍ଟ ତିନି-ତିନିଜଣ ଭଦ୍ରଲୋକଙ୍କ ସହିତ ଥାନା ଅଧିକାରୀଙ୍କ ନିର୍ଦ୍ଦେଶ କ୍ରମେ ଜଣେ ଯୁବଆଇନଜ୍ଞଙ୍କ ଦ୍ୱାରା ପରିଚାଳିତ ହୋଇ ସମାପ୍ତ ହେଲା । କଳିର ଉଦ୍ଦେଶ୍ୟ ଥିଲା ଅଳ୍ପକିଛି ଭୂମି ଉପରେ ଥିବା କିଛି ଫଳନ୍ତି ନଡିଆଗଛ । ଏହି ହେଉଛି ଲୋଭର କେନ୍ଦ୍ରବିନ୍ଦୁ । ବୃକ୍ଷର ମାଲିକ ଆଶ୍ରୟଦାତା ବଂଶଧର ଏବଂ ମିଥ୍ୟା ଦଲିଲ କରାଗଲା ଆଶ୍ରୀତାଙ୍କ ଉଦ୍ଦେଶ୍ୟରେ ଉଭୟପକ୍ଷ ଏବଂ ଯୁବ ଆଇନଜ୍ଞ ଗୋଟିଏ ସତ୍ୟକୁ ଉଦ୍‌ଘାଟନ କରି ନପାରି, ଶେଷ ପ୍ରସ୍ତାବ ଦେଲେ ଗଛ ଗୁଡିକୁ ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ମୁଣ୍ଡକାଟ ଦଣ୍ଡ ଏବଂ

ମୂଳୋତ୍ପାଟନ ଅର୍ଥାତ୍ ମୂଳୁ ମାରିଲେ ଯିବ ସରି, ଏହି ନଡିଆଗଛ ଗୁଡିକ ହେଉଛି କଳିର ମୂଳକାରଣ। ତେଣୁ ଦେବଙ୍କ ସଙ୍ଗେ କିମ୍ବା କଳି। ଫଳନ୍ତି ନଡ଼ିଆଗଛ ଗୁଡ଼ିକର ମୂଳୋତ୍ପାଟନ କରାଗଲା। ନଚେତ୍ ନିର୍ଦ୍ଧିଷ୍ଟ ସମୟସୀମା ଗଡିଗଲେ ଆଶ୍ରୀତର ଆଧିକାରଭୂକ୍ତ ହେବ। ଲୋଭ ତ ବ୍ରହ୍ମରାକ୍ଷସ-ନିଷ୍ପତ୍ତି ବାଧକଲେ। 'ଘର ବରଂ ପୋଡି ଯାଉ-ମୂଷା କେଞ୍ଚାଇ ପାଆନ୍ତୁ ଅବା ସ୍ୱାମୀ ବରଂ ବିଷଖାଇ ମରୁ-ସଉତୁଣୀ ରାଣ୍ଡ ହେବା ଭଲ। ଏହି ପ୍ରକାରର କାର୍ଯ୍ୟଶୈଳୀରୁ ସେହି ପରିବାରର ନାରୀଗଣ ଶିକ୍ଷାଲାଭ କଲେ। ତାହାଥିଲା ନକରାତ୍ମକ ଶିକ୍ଷା। ଏ ଯୁବ ଓକିଲ ଜଣେ କରିତ୍କର୍ମା। ଗୋଟିଏ ବଂଶର ଏକ ପରିବାର ଥିଲା ସନ୍ତାନଶୂନ୍ୟ। ତେଣୁ ସ୍ୱାମୀର ମୃତ୍ୟୁପରେ ସ୍ତ୍ରୀ ସ୍ୱାମୀର ପୈତୃକ ସମ୍ପତ୍ତିର ଅଧିକାରିଣୀ ହେବା ବିଧିସମ୍ମତ। କିନ୍ତୁ ବୃଦ୍ଧାର ମିଥ୍ୟା ମୃତ୍ୟୁ ପ୍ରମାଣପତ୍ର ସଂଗ୍ରହ କରି ଏକ ସରକାରୀ ଦଲିଲ ପ୍ରସ୍ତୁତ କରାଗଲା। କାରଣ ପରେ କେହି ଦାବିଦାର ଆପତ୍ତି ଜଣାଇଲେ, ସେହି ପୁରୁଣା ପଥର ପଥିକ ସାଜିବାକୁ ପଡିବ। ସବୁକ୍ଷେତ୍ରରେ ସେହି ଜଣେ ଜଗୁଆଳି। ତେବେ ପ୍ରଶ୍ନ ଉଠୁଛି, ସେହି ଜଗୁଆଳି ଅନ୍ୟାୟ ପଥଦେଇ କାର୍ଯ୍ୟ ହାସଲ କରାଇଥିବାରୁ ତାଙ୍କର ସ୍ୱାର୍ଥ କ'ଣ ଅଛି। ଭବିଷ୍ୟତରେ ସେହି ଭୂସମ୍ପତ୍ତିର ଅଧିକାରୀ କିଏ ହେବେ ? ଏଠାରେ ମଧ ସେହି ଦୃଷ୍ଟାନ୍ତ ଉପଲବ୍ଧି କରାଯାଏ ଯଥା ! ମୂଳୁ ମାରିଲେ ଯିବ ସରି'। ଲୋଭଗ୍ରସ୍ତ ମନୁଷ୍ୟ ସମସ୍ତ କିଛି ସାମାଜିକ ଆଇନ୍ କାନୁନ୍‌କୁ ଲଂଘନ କରିଥାଏ କେବଳ ସ୍ୱାର୍ଥପାଇଁ ଏବଂ ଭୟପାଇଁ। ବିବାହିତାନାରୀ ମାଆ ହୋଇପାରେ ଏବଂ ବଂଶରକ୍ଷା ପାଇଁ ପରିବାରକୁ ସନ୍ତାନ ପ୍ରଦାନ କରେ। ଏହି ହେଉଛି ବୈବାହିକ କାର୍ଯ୍ୟସୂଚୀର ମୂଳମନ୍ତ୍ର। ସେଥିପାଇଁ କୁହାଯାଏ, ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା। ଏହି କ୍ଷେତ୍ରରେ ମଧ ଶତ୍ରୁତା ଭାବାପନ୍ନ ନାରୀ ଏ ଜଗତରେ ଅଛନ୍ତି ଯେଉଁମାନେ ଅସହିଷ୍ଣୁତା ଆଚରଣ ପ୍ରଦର୍ଶନ କରିଥାନ୍ତି, ବଂଶରକ୍ଷା କରିବାଟା ପାରିବାରିକ ଜୀବନର ମୁଖ୍ୟାଙ୍ଗ। ଏଭଳି କ୍ଷେତ୍ରରେ କିଛି ନାରୀ ମଧ ଅଛନ୍ତି ଯେଉଁମାନେ ନ ପାରନ୍ତି, ଯେଉଁମାନେ ପାରନ୍ତି, ସେମାନଙ୍କୁ ବିଭିନ୍ନ କୌଶଳ କରି ମାରନ୍ତି। କିନ୍ତୁ ଥରେ ମନୁଷ୍ୟ ଚିନ୍ତାକରି ପାରେ ନାହିଁ ଯେ ପ୍ରତ୍ୟେକ ମନୁଷ୍ୟ ନିଶ୍ଚୟ ଦିନେ ମରିବ, ତେବେ ତାକୁ ମାରି ଲାଭ କ'ଣ ? ବାଳକ ହେଉ କି ବୃଦ୍ଧ ହୁଅନ୍ତୁ କିମ୍ବା ତରୁଣ ହୁଅନ୍ତୁ ଅବଶ୍ୟ ଦିନେ ହୋଇବ ମରଣ। ଯେ ଶତ୍ରୁ ଭାବାପନ୍ନ ଚିନ୍ତାଧାରା ନେଇ

ମାରେ ସେ ବି ଦିନେ ତାକୁ କେହି ନ ମାରିଲେ ମଧ୍ୟ ମରେ । ତେବେ ତାକୁ ଯେ ମାରେ ତା'ର ମୂଳୋତ୍ପାଟନ କରିପାରେ କି ? ନକାରାତ୍ମକ ଚିନ୍ତାଧାରା ପାଇଁ କେବଳ ମନୁଷ୍ୟ ଅନ୍ୟର କ୍ଷତି କଲାବେଳେ ନିଜର ପ୍ରଭୂତ କ୍ଷତିକରେ । ତଥାପି ମନୁଷ୍ୟ ତା'ର ଜିଦ୍‌ରେ ଅଟଳ ରହେ । ସେ ଜାଣେ, କଂସ ମଧ୍ୟ ମହାପଣ୍ଡିତ, ସେ ମଧ୍ୟ ଜାଣିଥିଲେ, ବୁଝିଥିଲେ କୁକର୍ମ କଲେ ତା'ର ଫଳାଫଳ କ'ଣ ହେବ । ନିଜେ ବଞ୍ଚିରହିବା ପାଇଁ ଏତେ ପାପ କରିବା ଠିକ୍ ହେବ ନାହିଁ । ପଶ୍ଚାତାପ କରିବାକୁ ପଡିବ । ଅନ୍ତର ଆତ୍ମା ଜଳିପୋଡି ଧିକ୍କାର କରିବା ଜୀବ ମରଣେ ସୁଖ ନାହିଁ । ନିଶ୍ଚୟ ନର୍କରେ ପଡିବାକୁ ହେବ । ସ୍ତ୍ରୀର ଗର୍ଭରେ ଶିଶୁ ଏମାନଙ୍କୁ ହତ୍ୟାକଲେ ଶ୍ରେଷ୍ଠ ପାପ ହେଉଛି ପ୍ରମାଦ, ତାକୁ ଭୋଗ କରିବାକୁ ପଡିବ ତଥାପି କଂସ ଶିଶୁହତ୍ୟା କରିବାକୁ ବାଧହେଲା । କାରଣ ନିଜେ ବଞ୍ଚିରହିଥିଲେ ବାପର ନାଁ । ମୂଳୋତ୍ପାଟନ ଶବ୍ଦ ଯେଉଁମାନେ ଚିନ୍ତା କରିଥିଲେ ସେମାନଙ୍କ କପାଳରେ ଭବିଷ୍ୟତ କ'ଣ ଲେଖେ ? ଏହା ଶ୍ରୀମଦ ଭଗବତରେ କଂସରାଜାଙ୍କ ନାକରାତ୍ମକ ଚିନ୍ତାଧାରାର ପ୍ରତିଫଳନ ହୋଇଛି । ଯଦି ମହାରାଜା କଂସ ଏଭଳି କୁକର୍ମରୁ ନିବୃତ୍ତ ହୋଇଥାନ୍ତେ ତେବେ କଂସକୁ ଭଗବାନ କ'ଣ ମାରିଥାନ୍ତେ ? ସେହି ଦ୍ୱିତୀୟ ଉଦାହରଣରେ ସ୍ୱାମୀ ବରଂ ମରୁ ସଉତୁଣୀ ରାଣ୍ଡହେଉ । ପ୍ରଥମେ ସ୍ତ୍ରୀ କ୍ରୋଧ ବଶବର୍ତ୍ତୀ ହୋଉ ନିଜର ସ୍ୱାମୀକୁ କୌଣସି ଉପାୟରେ ହତ୍ୟାକରି ସାରିବା ପରେ ନିଜର ବାହାଦୂରୀ ଭାବ ପ୍ରକାଶ କରିଛନ୍ତି । ଯଦି ନିଜର ସଉତୁଣି ପାଇଁ ତ୍ୟାଗ କରିଥାନ୍ତେ ନାରୀ ଜୀବନର ଆବଶ୍ୟକତା ତେବେ ବରଂ ପ୍ରଶଂସିତ ହୋଇଥାନ୍ତେ କିନ୍ତୁ ଏ କ୍ଷେତ୍ରରେ ଲୋକହସା ହୋଇ ନାହାନ୍ତି କି ? ସେହି ସ୍ୱାମୀ ଠାରୁ ସମୟ ସମୟରେ ଯେଉଁ ସୁବିଧା ପାଇଥାନ୍ତେ, ତାହା ଅବଶିଷ୍ଟ ଜୀବନକାଳରେ ପାଇବାରୁ ବଞ୍ଚିତ ହୋଇ ନାହାଁନ୍ତି କି ? ଅବଶ୍ୟ ତାହା ନାରୀଜାତି ପାଇଁ ମନସ୍ତତ୍ୱର ବିଚାର । ନଡ଼ିଆଗଛ ଗୁଡିକର ମୂଳୋତ୍ପାଟନ ହେବା ନିଷ୍ପତ୍ତି ବିରୁଦ୍ଧରେ ଯୁବ ଓକିଲଙ୍କ ଭୂମିକା ଗୌଣ ଏବଂ ନଗଣ୍ୟ । ଉଭୟ ପକ୍ଷରୁ ତିନି ତିନିଜଣ ଭଦ୍ରଲୋକ ବିଚାର କ୍ଷେତ୍ରରେ ନିଯୁକ୍ତ ଥିବା ବେଳେ ଯୁବ ଓକିଲ ନଡ଼ିଆଗଛ ଗୁଡିକର ମୂଳୋତ୍ପାଟନ ବିରୁଦ୍ଧରେ ଯେଉଁମାନେ ପକ୍ଷ ସାଜିଥିଲେ ସେହିପକ୍ଷର ନିଷ୍ପତ୍ତି ସହ ସ୍ୱର ଉତ୍ତୋଳନ କରିଥିଲେ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ସମ୍ମାନ ପ୍ରଦର୍ଶନ କରି ନଥାନ୍ତେ କି ? ଫଳନ୍ତି ଗଛ ଗୁଡିକୁ କାଟିବା ସହିତ ଗର୍ଭିଣୀ ନାରୀକୁ ହତ୍ୟାକରିବା ଦ୍ୱାରା ଯେଉଁ ପାପ ହେବ, ଯାହା ନିଜେ ମହାରାଜ କଂସ

କରିଛନ୍ତି । ଏଠାରେ ଯୁବ ଓକିଲ ସେହିପାପରୁ ମୁକ୍ତ କି ? ସୁନ୍ଦରୀ ଝିଅଟିର ଶାରୀରିକ ସୌଷ୍ଟଭ ଗଠନ ଉପରେ ହୀନ ନଜର ନିକ୍ଷେପ କରି ଏକତରଫା ପ୍ରେମ କ୍ଷେତ୍ରରୁ ହାରିଯାଇ ଏସିଡ଼ମାଡ କରି ଶାରୀରିକ ବିକୃତ କରାଇବା କାରଣ ଥିଲା ନିଜେ ଯଦି ସେଇ ଝିଅଟିକୁ ଉପଭୋଗ କରିପାରିଲେ ନାହିଁ ଅନ୍ୟ କେହି ଉପଭୋଗ କରି ନପାରନ୍ତୁ ଅର୍ଥାତ୍ ମୂଲୁ ମାରିଲେ ଯିବସରି, କିଏ କାହିଁକି ଅନ୍ୟ ଉପଭୋଗ କରିବା, ପାଗଳାମି । ବୋହୂଟି ବଂଶରକ୍ଷା ପାଇଁ ଗର୍ଭସ୍ଥ ଅବସ୍ଥାରେ, ବିଭିନ୍ନ ପ୍ରକାରର ଷଡଯନ୍ତ୍ର ମୂଳକ କାର୍ଯ୍ୟକ୍ରମ ଦ୍ଵାରା ହତ୍ୟା କରିବାଟା ଆଦୌ ଗ୍ରହଣୀୟ ନୁହେଁ । ଯେଉଁମାନେ ଏଭିଳ କୁକର୍ମ କରିଥାନ୍ତି, ସେମାନେ ନର୍କରେ ପଡି ନଥାନ୍ତି କି ? ଅତଏବ, ଏଭଳି ନକରାତ୍ମକ ଚିନ୍ତାଧାରା ଜନିତ ଘଟଣାରେ କ୍ଷମା ନଥାଏ । ସେଥିପାଇଁ କୁହାଯାଏ, ଆଜି ତୁମେ ଯାହା କରୁଛ ଦିନେ ନା ଦିନେ ତା'ର ସୁଫଳ ବା କୁଫଳ ଭୋଗ କରିବ । ତେଣୁ ମୂଲୁ ମାଇଲେ ଯିବ ସରି, ତାହା ନୁହେଁ ନିଜ ପାଇଁ ନିଜର ମୃତ୍ୟୁ ପାଇଁ ଗାତ ଖୋଳିବା ସହିତ ସମାନ ।

## ନାଟକ ଗୋପପୁର

ଆଜି ଗୋପପୁର କାଲି କଂସଘର, ମଥୁରା ନଗରୀ, ଲୋ ମାଆମାନେ ! ଗୋଟିଏ ପୁରୁଣା କାଳିଆ କାନ୍ଦଣୀ, ବିଭାଘର ସମୟରେ ଝିଅମାନେ କାନ୍ଦି ନିଜର ଅସହାୟତା ପ୍ରକାଶ କରୁଥିଲେ । ଉପସ୍ଥିତ ନାରୀମାନଙ୍କ ହୃଦୟ ବିଚଳିତ ହୋଇ ମାଆ ଭଉଣୀ ସହ ଯେତେ ବାନ୍ଧବୀଗଣ କାନ୍ଦରେ ମିଶାଇ ଦେଇଥିଲେ ଯେପରି ନିଜର ସମ୍ପର୍କୀୟଙ୍କର ହଠାତ୍, ବିୟୋଗ ହେଲା । କିନ୍ତୁ ଏବେ ଦ୍ଵିତୀୟ ପର୍ଯ୍ୟାୟ କଥାବସ୍ତୁ ପାଇଁ ଶବ୍ଦ ଶୁଣାଯାଏ । ଆଉ ପ୍ରଥମ ପର୍ଯ୍ୟାୟ କାର୍ଯ୍ୟକ୍ରମ ପ୍ରାୟ ସମାଜରୁ ବା ସାମାଜିକ ଚଳଣିରୁ ଲୋପ ହେବାକୁ ବସିଲାଣି । କାରଣ ଆଜିକାଲିର ଝିଅମାନେ କଂସପୁର ମଥୁରା ନଗରୀକୁ ଗୋପପୁର ନନ୍ଦଘରରେ ପରିଣତ କରିସାରିବା ପରେ ବିଭାଘର । କିନ୍ତୁ ନାଟକର ନାମ ଗୋପପୁର । ଗୋଟିଏ ଅତୀତକୁ ନାଟ୍ୟକାର ବର୍ତ୍ତମାନ ବହୁଳ ଘଟଣାର ସାମଞ୍ଜସ୍ୟ ଥିବା ହେତୁ ବୋଧହୁଏ, ଏପରି ନାମକରଣର ସାର୍ଥକତା ପ୍ରତିପାଦନ କରାଇବାକୁ ଚେଷ୍ଟା କରିଛନ୍ତି । ବନ୍ଦୀଶାଳାରେ ଅନ୍ଧକାର । ଅର୍ଦ୍ଧରାତ୍ରରେ ଦେବକୀ ଜନ୍ମ ଦେଇଛି ଏକ ପୁତ୍ର ସନ୍ତାନ ତା'ର ସୁରକ୍ଷା ଦାୟୀତ୍ଵ ପିତା ବସୁଦେବ ଓ ମାତା ଦେବକୀଙ୍କର । ବିଳମ୍ବ ହେଲେ

ମୃତ୍ୟୁ ସୁନିଶ୍ଚିତ । ତେବେ ଏବେ କର୍ତ୍ତବ୍ୟ ସେହି ଜନ୍ମିତ ଶିଶୁଟି ପାଇଁ କ'ଣ ? ତାକୁ ବଞ୍ଚିବାକୁ ଦେବେ ନା ମୃତ୍ୟୁ ମୁଖକୁ ଠେଲିଦେବେ ? ମଥୁରା ନଗରୀକୁ କିପରି ଗୋପନଗରୀ ନେଇଯିବେ, ସେହି କ୍ଷୁଦ୍ର ଶିଶୁଟିର ଜୀବନ ରକ୍ଷା ପାଇଁ। ମନୁଷ୍ୟ ଜନ୍ମ ହୋଇଛି ଦିନେ ତାର ମୃତ୍ୟୁହେବ, ଏହା ଧ୍ରୁବ ସତ୍ୟ କିନ୍ତୁ ଅବହେଳା ଦ୍ୱାରା ମୃତ୍ୟୁ ବରଣ କରିବ, ଏଭଳି ନିର୍ଦ୍ଦେଶ କୌଣସି ସ୍ଥାନରେ କୌଣସି କ୍ଷେତ୍ରରେ ନିର୍ଦ୍ଦେଶ ଦିଆଯାଇ ନାହିଁ । କିନ୍ତୁ ତା'ର ଜୀବନ ରକ୍ଷା ପାଇଁ ଯେତେ ପ୍ରତିବନ୍ଧକର ସମ୍ମୁଖୀନ ହେଲେ ମଧ ତଥାପି ଡରିଯିବାଟା କାପୁରୁଷର କର୍ତ୍ତବ୍ୟ ବୋଲି ବସୁଦେବ ଭାବି ଉତାଳ ତରଙ୍ଗାୟୀତ ଯମୁନା ନଦୀକୁ ଅତିକ୍ରମ କରିଛନ୍ତି। ତହୁ ଚଳିଲା ବସୁଦେବ, ପଥେ ନରହି ଏକ ଲବ। ନଦୀର ତୀରେ ଯାଇମିଳି-ଦେଖିଲା ଯମୁନା ଉଛୁଳି। ଯମର ଭଗିନୀ ଯୁକତ ଗଭୀର କେ କରିବ ଅନ୍ତ। ବହଇ ଅତିପର ଖର ଫେନରେ ଦିଶେ ଯନ୍ତ୍ରଣା-ଅଭାବ-ଅସୁବିଧା। ତେବେ ଉଦ୍ୟମ, ଚେଷ୍ଟା ନ କରି ହତୋତ୍ସାହ ହୋଇ କ'ଣ ଅପେକ୍ଷା କରିବ ଏହିଦିନ-ଏହି ଅବସ୍ଥା ନିଜଠାରୁ ଯିବ ବୋଲି ? ଆପେ ଆପେ ଅତିକ୍ରମ କରିଲା । ପରେ କ'ଣ ଆସିବ ଅପେକ୍ଷା କରାଯାଉ କିମ୍ବା ଯମୁନା ନଦୀକୁ ବନ୍ୟା କମିବା ପର୍ଯ୍ୟନ୍ତ। ତେବେ ଅନ୍ଧକାର ମଧରାତ୍ର ଝଡ ବତାସରେ ସେ କାହିଁକି ସେହି ନଦୀକୂଳରେ ପହଁଞ୍ଚିଛି ? କିନ୍ତୁ ଏ କ୍ଷେତ୍ରରେ ଗୋପପୁର ଗୋଟିଏ ଗ୍ରାମୀଣ ନିମ୍ନ ମଧବିତ୍ତ ଦମ୍ପତ୍ତିଙ୍କ ଦୁଃଖ ଆଉ ସଂଘର୍ଷର ଜୀବନ କାହାଣୀ। ସମସ୍ତ ଅପ୍ରାପ୍ତି ଏବଂ ବିଫଳତା ଭିତରେ ରୋଗଗ୍ରସ୍ତ ପୁଅକୁ ଧରି ସ୍ୱାମୀ ଓ ସ୍ତ୍ରୀ ଦୁଇଜଣ ଆପ୍ରାଣ ଚେଷ୍ଟା କରି ପହଞ୍ଚଛନ୍ତି ନଦୀକୂଳରେ। ଜ୍ୱରରେ ପୁଅ ଦେହରେ ଖଇ ଫୁଟୁଛି। ନଦୀରେ ଏତେ ପାଣିଯେ ଦୁଇକୂଳ ଖାଉ ଥିଲା ନଦୀ ସେପାରି ଅନ୍ତରରେ ଅନେକ ଦୂରରେ ପଡିବ ହାସପାତାଳ। କିଏ ବ୍ୟସ୍ତ ହୋଇ ନ ପଡିବ ଯେ! ଏତେ ରାତରେ ନାଉରିଆ ଚାଲିଗଲାଣି। ଏ ପରିସ୍ଥିତି ରେ କାହାର ମୁଣ୍ଡରେ ବୁଦ୍ଧି ଜୁଟିବ ? ଏହିଭଳି ଦିନେ ବସୁଦେବ ଶିଶୁସଦ୍ୟଜାତ ଶ୍ରୀକୃଷ୍ଣଙ୍କୁ ନେଇ ଯମୁନା କୂଳରେ ପହଞ୍ଚିଥିଲେ। ବସୁଦେବ ମଧ ଯେପରି ସାହସ ସାଉଁଟୁ ଥିଲେ। ଏଠାରେ ଏହି ଗ୍ରାମୀଣ ଯୁବକ ନିରାକାର ମଧ ଉପାୟ ଖୋଜୁଛି। ହଠାତ୍ ସ୍ତ୍ରୀର ହାତଧରି ଶିଶୁପୁତ୍ରଟିକୁ ନେଇ ଡଙ୍ଗାରେ ବସିଛନ୍ତି। ନିଜେ ନାଉରିଆ ସାଜି ନାବଟିକୁ ଆଗକୁ ଆଗକୁ ନେବାକୁ ଚୋଷ୍ଟା କଲେ। କିନ୍ତୁ ଦୁଃଖ କ'ଣ ଶେଷ ହୋଇଛି ? ଡଙ୍ଗାରେ ପଡିଥିବା ଛିଦ୍ର ଦ୍ୱାରା ଡଙ୍ଗାରେ ନଦୀଜଳ ପ୍ରବେଶ କରୁଛି। ବନ୍ୟାରେ ନଦୀ ଗର୍ଜନ କରୁଛି। ଯଦି

ଡଙ୍ଗା ବୁଡିଯାଏ ? ସ୍ୱାମୀ ନଦୀକୁ ଡେଇଁପଡି ପହଁରି ପହଁରି ଛୁଆଟିକୁ ନେଇ ଯିବାକୁ ସ୍ତ୍ରୀକୁ ପରାମର୍ଶ ଦେଇଛି । ସ୍ତ୍ରୀ ମଧ୍ୟ ସ୍ୱାମୀକୁ ଅନୁରୋଧ କରିଛି, ଛୁଆକୁ ନେଇ ତା'ର ଜୀବନ ରକ୍ଷା କରିବା କର୍ତ୍ତବ୍ୟ କିନ୍ତୁ ଯଦି ଡଙ୍ଗା ଭାରସାମ୍ୟ ରଖିପାରୁ ନାହିଁ ସେ ନଦୀ ମଧ୍ୟକୁ ଡେଇଁ ପଡିବାକୁ ପ୍ରସ୍ତାବ ଦେଇଛି । ପୁନରାୟ ଛୁଆଟିର ଜୀବନ ରକ୍ଷା ପାଇଁ ଉଭୟ ନଦୀଗର୍ଭକୁ ଡେଇଁ ପଡିବାକୁ ଶେଷ ନିଷ୍ପତ୍ତି ନେଲେ । ଉଭୟଙ୍କ ମଧ୍ୟରେ ଟଣା ଓଟରା-ଝଗଡାଝାଣ୍ଟି-ମୁହଁ ଫୁଲାଫୁଲି-ଆସ୍ତିନାସ୍ତି ବାଚକ ବାକ୍ୟାଳାପ ମଧ୍ୟରେ କେତେବେଳେ ଡଙ୍ଗାଟି କୂଳପ୍ରାପ୍ତି ହୋଇଛି, ଏମାନେ କିନ୍ତୁ ବୁଝିପାରି ନାହାନ୍ତି । ଏତେବଡ଼ ନୈରାଶ୍ୟତା ମଧ୍ୟରେ ଆଶା ମଧ୍ୟ ଲୁଚି ରହିଥାଏ । ସମସ୍ତ ବିପଦରୁ ବର୍ତ୍ତୀ ଯାଇଥିଲେ । ତା ପରେ ଯଥାଶୀଘ୍ର ଚାଲି ଚାଲି ହାସପାତାଳରେ ପହଞ୍ଚି ନିଜର ଛୁଆର ଜୀବନ ରକ୍ଷା କରି ପାରିଥିଲେ । ପରସ୍ପର ପ୍ରତି ଅତୁଟ ଭଲ ପାଇବା ଥିଲେ ସାଂସାରିକ ଜୀବନଯାପନର ଯେ କୌଣସି ବିପଦରୁ ମୁକ୍ତି ମିଳିପାରେ । ଯେପରି ଶ୍ରୀକୃଷ୍ଣଙ୍କ ବସୁଦେବ ଗୋପପୁରରେ ପହଞ୍ଚି ପାରିଥିଲେ । ଏହା ତ ସାଧାରଣ ଦାମ୍ପତ୍ୟ ଜୀବନର କଥା । ତେବେ ଗୋପପୁର ହେଉଛି ନିରାପଦ ଜୀବନରକ୍ଷାର ସ୍ଥାନ । ଯେପରି ଏ ଦୁହିଁଙ୍କର ଅସୀମ ଧୈର୍ଯ୍ୟ ଓ ତ୍ୟାଗ ପାଇଁ ସଫଳତା । ନଚେତ୍ ସୁନିଶ୍ଚିତ ଥିଲା.... । ଠିକ୍ ସେହିପରି ବସୁଦେବ ଏବଂ ଦେବକୀଙ୍କ ଜୀବନ ଶ୍ରୀକୃଷ୍ଣଙ୍କ ପାଇଁ ସେପରି ନଥିଲା କି ? ନାଟକଟିର ନାମ 'ଗୋପପୁର' ଏହାକୁ ରଚନା କରିଥିଲେ ଡକ୍ଟର ରାମଚନ୍ଦ୍ର ବେହେରା । ଜୀବନ୍ତ ଆଲେଖ୍ୟ । ସମାଜରେ ପ୍ରତିଦିନ ପ୍ରତ୍ୟେକ ମନୁଷ୍ୟ ସମ୍ମୁଖରେ ଏପରି ଆଶା ନିରାଶା ଉପସ୍ଥିତ । ହତୋତ୍ସାହ ନ ହେବା ପାଇଁ ବେହେରାଙ୍କ ଆହ୍ୱାନ, ଧନ୍ୟବାଦ ।

## ନିଶାଦ

ମାନବ ସମାଜ ଦ୍ୱାରା ଏବଂ ସମାଜ ଠାରୁ ବହିଷ୍କୃତ ବ୍ୟକ୍ତି ବିଶେଷର ବାସସ୍ଥାନ କେଉଁଠି ? ପୂର୍ବ କାଳରେ ବଣ ଜଙ୍ଗଲରେ ଥିବା ସ୍ଥଳରେ ମଧ୍ୟଯୁଗରେ ବା ଐତିହାସିକ ଯୁଗରେ ଜେଲଖାନା ବା ଦ୍ୱୀପରେ ଏବଂ ଆଧୁନିକ ଯୁଗରେ ଜେଲଖାନା ହେଉଛି ବାସସ୍ଥାନ । ପୌରାଣିକ ଭାଷାରେ ନର୍କଦଣ୍ଡ । ବଣ ଜଙ୍ଗଲରେ ପଶୁପକ୍ଷୀ ମାନଙ୍କ ସହିତ ଓ ଦ୍ୱୀପାନ୍ତର ଦଣ୍ଡରେ ମଧ୍ୟ ସମାନ ଏବଂ ଜେଲ୍‌ଖାନାରେ

ସମଗୋତ୍ରୀୟଙ୍କ ସହିତ। ଜୀବନ ଯାପନ ପ୍ରଣାଳୀ ବିଷୟରେ ଅବଗତ ହେବା ପାଇଁ ଜଣେ ଫାଶି ଖୁଣ୍ଟରେ ଝୁଲିବା ପୂର୍ବରୁ ଯାହା ଯାହା ବକ୍ତବ୍ୟ ପ୍ରଦାନ କରେ। ତଥାପି ପୁରାଣ ସେମାନଙ୍କୁ ନାମ କରଣ କରେ ନିଶାଦ। ଆଜିକାଲିର ନାମ କରାଗଲାଣି ଦୁଷ୍କର୍ମା ବା ଦୁଷ୍କର୍ମୀ। ପଶୁପକ୍ଷୀମାନଙ୍କ ହତ୍ୟା ପାଇଁ ଦୋଷୀକାରୀ। ଅନ୍ୟ ଗୋଷ୍ଠୀଚ୍ୟୁତ ବା ଗୋଷ୍ଠୀଛଡା-ସ୍ୱାମୀଦ୍ୱାରା ପରିତ୍ୟକ୍ତା ଜାତିଠାରୁ ଅଜାତିଆ ଗ୍ରାମରୁ ଏକ ଘରିଆ ଇତ୍ୟାଦି ଇତ୍ୟାଦି। ଏମାନଙ୍କୁ ସମାଜ ଘୃଣାକରେ। କାରଣ ଏମାନେ ଅସାମାଜିକ କାର୍ଯ୍ୟ ସହିତ ଅମାନବୀୟ କାର୍ଯ୍ୟକଳାପରେ ମଧ ସଂଶ୍ଳିଷ୍ଟ। ଚୋରୀ-ଈର୍ଷା-ଲୁଣ୍ଠନ-ବଳପ୍ରୟୋଗ-ଧର୍ଷଣ-କାର୍ଯ୍ୟ ସହିତ ଜଡିତ। ପୂର୍ବକାଳରେ ଅଭିଶାପ ମାଧମରେ ବହିଷ୍କାର ଆଦେଶ ବା ପିତାଙ୍କ ଆଦେଶ ଅଥବା ବିଚାରାଳୟର ଆଦେଶ। ପୂର୍ବକାଳରେ ଜ୍ଞାନୀ-ପଣ୍ଡିତ-ସାଧୁ-ସନ୍ଥ-ବ୍ରାହ୍ମଣଙ୍କ ହାତରେ ଅଭିଶାପ ଦେବାର କ୍ଷମତା ଥିଲା। ଯେପରି ରାଜା ପରୀକ୍ଷିତଙ୍କୁ ବ୍ରହ୍ମ ଅଭିଶାପ ଥିଲା। ଆଜୁଁ ସପତ ଦିନ ଶେଷେ-ତକ୍ଷକ ଆସି ମହାରୋଷେ। ତା'ର ଶରୀର ବେଗେ ଖାଉ-ଏ ପାପୀ ଜଗତେ ନଥାଉ। ତାହା ସତ୍ୟ ହେଲା। ଅଦୋଷୀ ଋଷି ଗଲେ ନେଇ-ମୃତ ସର୍ପକୁ ଗୁଡାଇ। ସେ ଦୋଷେ ଋଷି ଶାପ ଦେଲେ-ତକ୍ଷକ ବିଷେ ଭସ୍ମ ହେଲେ। ଏହି ହେଉଛି ଅଭିଶାପ। ଆଜିକାଲି ଏହି ନିଶାଦମାନଙ୍କୁ ବନ୍ଦୀଶାଳାକୁ ପଠାଇ ଦିଆ ଯାଇଥାଏ।। ପଥଭ୍ରଷ୍ଟ ଅସାମାଜିକ କାର୍ଯ୍ୟକଳାପ ସହିତ ମଣିଷ ଜଡିତ ହୁଏ କାହିଁକି ? ଲୋକମାନେ ଇନ୍ଦ୍ରିୟ ତୃପ୍ତି ନିମିତ୍ତ ପାଗଳ ଏବଂ ସେମାନେ ଜାଣନ୍ତି ନାହିଁ ଯେ ଏହା ଦୁଃଖପୂର୍ଣ୍ଣ ବା ବ୍ୟାଧିପୂର୍ଣ୍ଣ। ଏ ଶରୀର କ୍ଷଣସ୍ଥାୟୀ ଅଟେ। ଏଥିପାଇଁ ଶରୀରକୁ ନାନା ପ୍ରକାର କଷ୍ଟ ଦେଉଛି। ତେଣୁ ଇନ୍ଦ୍ରିୟ ନିମିତ୍ତ ସେହି କର୍ମ କରିବା ଅନୁଚିତ। ଏହା କେବଳ ଅବିଦ୍ୟା ଦ୍ୱାରା ହିଁ ପ୍ରଭାବିତ ଯଥା କହିବା ବେଗ ମନର ବେଗ। ଯାହାଫଳରେ ଦୁଷ୍କର୍ମ ସଂଗଠିତ ହୁଏ, ଏହା ଜ୍ଞାନର ବଶବର୍ତ୍ତୀ ନୁହେଁ। ଫଳରେ ଧନବଳ ଥାଇ ସମର୍ଥକଙ୍କ ବଳ ପାଇଁ ଗର୍ବ-ଦମ୍ଭ ଏବଂ ପ୍ରତିଭୂତି ସମ୍ପତ୍ତି ହେତୁ ଅଥବା ଯୌବନର ପରାକାଷ୍ଠା ପ୍ରତିପାଦନ ବା ତୃପ୍ତି ନିମିତ୍ତ ମନୁଷ୍ୟ ଅଚିର ପଥକୁ ପାଥେୟ କରେ। ନିରୀହ ଅବହେଳିତ ପତିତମାନଙ୍କ ତୃପ୍ତି ଯଥେଚ୍ଛାଚାର ଶାସନ କରେ। ଏହା ଯେତେବେଳେ ପରିଣତ ହୁଏ, ସମାଜ କ୍ଷମା ଦେଇ ନଥାଏ। ଏହି ଖରାପଗୁଣ ପ୍ରତି ମଣିଷ ଆକୃଷ୍ଟ ହୁଏ କାହିଁକି ? ଏଥିପାଇଁ ଦାୟୀ କିଏ ? ବିଶ୍ଳେଷଣ ଓ ଅନୁସନ୍ଧାନ କରାଗଲେ ଏହା ସହଜରେ ବୁଝାପଡେ ଯେ ପିତା ମାତା-ବଂଶ ଚରିତ୍ର -ପୂର୍ବସୂରୀ କିମ୍ବା ପରିବେଶ, ବିଶେଷତଃ ବୈବାହିକ ସମ୍ପର୍କରେ ବା ତ୍ରୁଟିପୂର୍ଣ୍ଣ ନିର୍ବାଚିତ ପଦ୍ଧତି

ଫଳରେ କୁ-ସନ୍ତାନ ଜନ୍ମଲାଭ କରେ। କିନ୍ତୁ, ଏହା ପରିବର୍ତ୍ତନଶୀଳ। ମାତ୍ର ପୁଞ୍ଜିଭୂତ ଅପକର୍ମର ଫଳାଫଳକୁ ଅଭିଶାପର ଫଳାଫଳ ବୋଲି କୁହାଯାଏ। ଜନ୍ମଦାତ୍ରୀ ମାତା ବା ମାତୃକ ବଂଶ ହିଁ ଏଥିପାଇଁ ଦାୟୀ। ଏହି ପରିପ୍ରେକ୍ଷୀରେ ପୁରାଣ ଯୁଗରେ ଏକ ଘଟଣା ପ୍ରତି ଦୃଷ୍ଟିପାତ କରାଯାଉ। ଭାଗବତକାର ଶ୍ରୀ ଜଗନ୍ନାଥ ଦାସ ପ୍ରସିଦ୍ଧ ମନୁ ବଂଶକୁ ସମାଲୋଚନା କରିଛନ୍ତି। ପୂର୍ଣ୍ଣ ଜ୍ଞାନସ୍ତରରେ ରହି କର୍ମ କଲେ କର୍ମର ପ୍ରତିକ୍ରିୟା ଯେ ଆଉ କିଛି ରହେ ନାହିଁ। ତାହା ସୁଖପ୍ରଦ ଓ ଆନନ୍ଦ ଦାୟକ। ତାହା ଦୁଷ୍କର୍ମ ନୁହେଁ  ବା ଆପତ୍ତି ଜନକ ନୁହେଁ। କିନ୍ତୁ ଯେହେତୁ କର୍ମଟି ଦୁଃଖଦାୟକ ହେତୁ ପରିଣତ ଅବସ୍ଥାରେ ତା'ର ରୂପ ବଦଳିଯାଏ। ସେଥିପାଇଁ ଆମ ସାମାଜିକ ସ୍ତରରେ ବୈବାହିକ ପଦ୍ଧତିକୁ ସମ୍ମାନ ଦେବାପାଇଁ ନାରୀ ସୁନ୍ଦର-ଚୂଡ଼ି-ଝୁଣ୍ଟିଆ ପିନ୍ଧେ ନଚେତ୍ ପୁରୁଷର ଦୃଷ୍ଟିଭଙ୍ଗୀ ଭିନ୍ନ ରୂପ ନିଏ। ପର ଦାରାସୁ ମାତୃବତ୍, ଅର୍ଥାତ୍ ମାଆଭଳି ଭାବିବା ଉଚିତ ବା ନ୍ୟୁନ ଦୃଷ୍ଟିରେ ଦେଖିବା ଉଚିତ। ସାମାଜିକ ଓ ପରିବାରିକ ଦାୟୀତ୍ୱ ବୋଧରେ ଝିଅଟିର ପ୍ରଥମ ସ୍ତର ପିତା-ମାତା ଦ୍ୱିତୀୟସ୍ତରଟି ସ୍ୱାମୀ-ଶାଶୁ-ଶ୍ୱଶୁର ଏବଂ ପରିବାର ତୃତୀୟ ସ୍ତରଟି ନିଜର ସନ୍ତାନଙ୍କ ଯତ୍ନରେ ସୁରକ୍ଷିତ। କିଭଳି ଭାବରେ ଜୀବନ ଯାପନ କରାଯିବା ଉଚିତ ତାହା ନିଜର ଦାୟିତ୍ୱ। କିନ୍ତୁ ପ୍ରଚଳିତ ଯୁବ ସମାଜ ଏ ନୀତିକୁ ଅଗ୍ରାହ୍ୟ କରେ ଫଳରେ ଅଧିକାଂଶ ବିପଦରେ ପଡିଥାନ୍ତି। କାହିଁକି ? ସେମାନେ ଅବା କିପରି ବୁଝିପାରିବେ ଏହା ଏକ ରୋଗ ନାମ ତା'ର ଉନ୍ମାଦନା। ଉନ୍ମାଦ ଏକ ରୋଗ। ଏହା ଉଭୟ ପୌଢ଼ ଓ ପୌଢ଼ାଙ୍କୁ ଗ୍ରାସକରେ  ଅନ୍ଧତ୍ୱ। ବସନ୍ତ ଋତୁର ଆଗମନ ଏବଂ ବୈଶାଖ ମାସର ଝାଞ୍ଜିରେ ଶୁଷ୍କ ପତ୍ରଝଡା ଭାବ। ଏ ରୋଗୀକୁ ଗାଁଭଳି ଭାଷାରେ କହନ୍ତି ଉତୁରୁଛି-ଉଗୁରି ହେଉଛି-ଉତ୍ପାତ ହେଉଛି। ଏହାର ଉଚ୍ଚତମ ସୋପାନରେ ନାମ ମାତାଲ ଅବସ୍ଥା। ଖାଲି ଖୋଜି ବୁଲୁଥିବେ। ନନ୍ଦନ କାନନରେ ପ୍ରଥମେ ବନ୍ଦୀ ବାଘ ଦୀପକ ସହିତ ବାଘୁଣୀ କାନନ ଚନ୍ଦକା ଜଙ୍ଗଲରେ ହେନ୍ତାଳ ଖାଇ ବୁଲିବୁଲି ଆସି ଭେଟିଥିଲା ସାଥୀକୁ। ହେଲେ କ'ଣ ହେବ, ଅସ୍ଥାୟୀ ହେଲା ସମ୍ପର୍କ। ମାତାଲ ଅବସ୍ଥା ଚାହେଁ ଯଥାଶୀଘ୍ର, ଯାହା ମିଳୁଛି ଛାଡୁଛି କିଏ ? ବିଚାର ବୁଦ୍ଧି ଶୂନ୍ୟ ଅବସ୍ଥା। ଏହାର ପ୍ରତିକ୍ରିୟା ଥିବା ହେତୁ ଆତ୍ମହତ୍ୟା-ପାଗଳ-ଧର୍ଷଣ-ବଳାତ୍କାର ଇତ୍ୟାଦି ଘଟୁଛି। ପିତା-ମାତା ମୁଖ୍ୟତଃ ଏଥିପାଇଁ ଦାୟୀ ଝିଅମାନଙ୍କ ପ୍ରତି ପୁରୁଷ ଆକର୍ଷିତ ହେବାର ମୂଳକାରଣ ହେଉଛି, ତାହା ସେହିମାନେ ବୁଝିଥାଆନ୍ତି। କେବଳ ତୁଚ୍ଛାଟାରେ ହୋ-ହୁଲା ହେଉଥାଏ। ସୁବିଧା ପାଇଲେ କିଏ ଛାଡେ। ଅଲଜ୍ୟା ମାତୃଦୋଷେଣ ପିତୃଦୋଷେଣ

ମୂର୍ଖତା। ବର୍ତ୍ତମାନ ଚାରିଆଡେ ବିଷାଦ ନିଶାରେ ପାଲଟି ଗଲେଣି ମଣିଷ। ପିତା-ମାତା କଥା ଯେହେତୁ ଏକ ଉଦାହରଣ, ତେଣୁ ଏକ ପୌରାଣିକ କଥା ଶୁଣିବା ହେଉ। ବେଣୁ ବୋଲି ଜଣେ ରାଜାଥିଲେ। ତତ୍କାଳୀନ ମାନବସମାଜ ତାଙ୍କୁ କ୍ଷମତାଚ୍ୟୁତ କରିବା ସଙ୍ଗେ ସଙ୍ଗେ ସମାଜରୁ ବହିଷ୍କାର କରିଥିଲା। ମାତା ଥିଲେ ଯମରାଜାଙ୍କର କନ୍ୟା। ମାତାର ସ୍ୱଭାବ ଚିତ୍ର-କାର୍ଯ୍ୟାବଳୀକୁ ଗ୍ରହଣ କରି ଜନ୍ମ ହୋଇଥିଲେ ବେଣୁ। ସବୁବେଳେ ଅଧାର୍ମିକ କାର୍ଯ୍ୟ କରେ, କାରଣ ମାତାର ଗୁଣକୁ ସେ ତ୍ୟାଗ କରିପାରିଲା ନାହିଁ। ମୁନି-ଋଷି-ବ୍ରାହ୍ମଣ-ବିଜ୍ଞମାନଙ୍କ ବିଚାରରେ ଅଭିଶାପ ଦେଲେ, କାରଣ ଏମାନେ ସମସ୍ତେ ଥିଲେ ବ୍ରହ୍ମଦର୍ଶୀ-ଧାର୍ମିକ-ନ୍ୟାୟବାନ ସମାଜ ରକ୍ଷକ ଏବଂ ଅନ୍ୟ ପକ୍ଷରେ ଅଧର୍ମ ଅଂଶୁ ମୃତ୍ୟୁଜାତ। ସେ ମୃତ୍ୟୁ ଅଧାର୍ମିକ-କ୍ଷତ୍ରୀୟ ଭାବେ ଅତିରେକ। ଅତଏବ ଯେଉଁ ବଂଶରେ ଧ୍ରୁବ-କ୍ରତୁ-ଅଙ୍ଗିରା ଇତ୍ୟାଦି ମହର୍ଷି ଜନ୍ମ ହୋଇଥିଲେ ସେହି ବଂଶରେ କଳଙ୍କ ଲଗାଇଲେ ବେଣୁ। ତେଣୁ ସେ ହେଲେ ନିଷାଦ। ଏହାର ମୁଖ୍ୟ କାରଣ ହେଲା ମାଆ ଏବଂ ମାତୁଳବଂଶ। ଏକ ଯୁବକ ଏବଂ ଏକ ଯୁବତୀ ଯେତେବେଳେ ଏକୁଟିଆ ଭେଟନ୍ତି, ଇନ୍ଦ୍ରିୟଗୁଡିକ ଯୁବକକୁ ଟାଣି ନିଅନ୍ତି। ଯୁବତୀଟି ଦେଖିବାକୁ ତାକୁ ସ୍ପର୍ଶ କରିବାକୁ ତାହା ସହିତ ଯୌନ ମିଳନ କରିବାକୁ ଇଚ୍ଛାକରେ। ପ୍ରାରମ୍ଭଟି ସୁଖପ୍ରଦ କିନ୍ତୁ ପରବର୍ତ୍ତୀ ଦୁଃଖ ଆଦି ଆସେ। ଜଙ୍ଗଲରେ ବା ନିର୍ଜନରେ ବାସ କଲାଭଳି ଲାଗେ। ଏ ହେଉଛି ଜନ୍ମଗତଗୁଣ। ଏକ ଅନୁଭୂତିରୁ ପଦେ କହିବା। ମାଆ ଯେତେ ବାହାରର ପୁରୁଷଙ୍କ ସହିତ ସମ୍ପର୍କ ସ୍ଥାପନ କରେ, ଝିଅମାନେ ଅବିବାହିତ ବୟସରେ ମାଆର ମାର୍ଗକୁ ଆଦର୍ଶ ବୋଲି ଗ୍ରହଣ କରେ। ଛୁଆମାନଙ୍କ ପିତା ନାରୀମାନଙ୍କ ମାୟରେ ବଳୟ ମଧରେ ରହି ଭୋଗବିଳାସରେ ସମୟ ଅତିବାହିତ କରେ। ସହଜ ଉପଲବ୍ଧ ପୁରୁଷ ପ୍ରେମ ଛାଡୁଛି କିଏ ? କିନ୍ତୁ ଏହାର ଶେଷ ପରିଣାମ କ'ଣ ଦିଏ ?

## ନିର୍ବାକ

ଜୁଆର ଆଉ ଉଠୁନାହିଁ କି ଭଟ୍ଟା ପଡୁନାହିଁ। ଯଦି ଜୁଆର ଉଠିବ, ଜୀବନ ତରୀଟି ନିଶ୍ଚିହ୍ନ ହେବ। ଜୁଆର ଯଦି ଛାଡିବ, ଜୀବନ ତରୀଟି ନିଶିହ୍ନ ହେବ।" ସେହି ସମୟରେ ମଣିଷ କାହାକୁ ଡାକିବ ? ଅତ୍ୟୁଚ ଜଳରାଶି। ସମୁଦ୍ର ସହ ତିନି ନଦୀର ମିଳନ ସ୍ଥଳ। ନାମ ତାହାର ମୁହାଣ। ବିପଦରୁ ରକ୍ଷା କରିବ କିଏ ? ସମୟ ଏତେ ନିଷ୍ଠୁର ନୁହେଁ।

ବିପଦରୁ ମୁକ୍ତ କରାଏ। ପ୍ରକୃତି ନିର୍ବାକ ହୋଇଯାଏ। ନିଶ୍ଚଳ ହୋଇଯାଏ। ଅନୁଧ୍ୟାନ କରେ ଏବଂ ମନୁଷ୍ୟର ପ୍ରକୃତି ପାଇଁ ସମବେଦନା ଜ୍ଞାପନ କରେ। ଭଗବାନ, ରକ୍ଷା ନିମିତ୍ତ ଏକ ଜୀବନ ତରୀ ପଠାଇ ଦିଅନ୍ତି। ଏହାହିଁ ଅଦୃଷ୍ଟ ଶକ୍ତିର ଇଙ୍ଗିତ ଓ ଆଶୀର୍ବାଦ। କିନ୍ତୁ ମନୁଷ୍ୟ ଏବେ ବେଇମାନ, ଉଦ୍ଧାର ପାଇସାରିଲା ପରେ, ସେହି ଉଦ୍ଧାରକର୍ତ୍ତାଙ୍କୁ ଭୁଲିଯାଏ। ଖୋଜେନାହିଁ କି ଥରେ ମନେପକାଏ ନାହିଁ। ଏକ ସତ୍ୟ ଘଟଣା ଉପରେ ଆଧାରିତ ଛୋଟିଆ ଗପଟିଏ। ଏକ ରୋମାଞ୍ଚକର କାହାଣୀ। ବାଲେଶ୍ୱର ଜିଲ୍ଲାର ଧାମରା ଏକ ବନ୍ଦର ଅତୀତରେ ଥିଲା। ସେଠାରେ ପୂଜା ପାଆନ୍ତି ମାଆ ଠାକୁରାଣୀ ଧାମରେଇ। ଏହି ଧାମରା ଏକ ମୁହାଣ ଅର୍ଥାତ୍ ତିନି ନଦୀର ସମୁଦ୍ର ସହ ମିଳନସ୍ଥଳ। ଠାକୁରାଣୀ ପୀଠରେ ବର୍ଷରେ ଥରେ ମକର ସଂକ୍ରାନ୍ତି ଦିନ ଉଚ୍ଚକୋଟୀର ପର୍ବାଣି ପାଳନ କରାଯାଏ। ଆମ କଟକର ବାଲିଯାତ୍ରା ଭଳି ଯାତ୍ରା ଲାଗି ରହେ। ବେଶୀ ମୟୂରଭଞ୍ଜ, ବାଲେଶ୍ୱର, ଭଦ୍ରକ, ଏବଂ ରାଜନଗର ଆଦି ଅଞ୍ଚଳରୁ ଯାତ୍ରୀ ଯାଇଥାନ୍ତି। ହୁକ୍‌ଟେଲା ବତିଘର, ଡାଙ୍ଗମାଳ, ପଞ୍ଚୁରାଇ, ସାତଭାୟା, ଘଡ଼ିଆମାଳ ଇତ୍ୟାଦି ରାଜନଗର ଠାରୁ ନୌକାବିହାର କଲେ ଏକପକ୍ଷରେ ବଙ୍ଗୋପସାଗର ଓ ଅନ୍ୟପକ୍ଷରେ ଦେନ୍ତାକରଣ ଜଙ୍ଗଲର ଦୃଶ୍ୟ ଦେଖି ଦେଖି ଯିବେ। ବ୍ରାହ୍ମଣୀ ଖରସ୍ରୋତା ଓ ବୈତରଣୀ ନଦୀ ଏହି ମୁହାଣ ସୃଷ୍ଟି କରିଛନ୍ତି। ଆମ ଗାଁ ଠାରୁ ମାତ୍ର ଏକ କିଲୋମିଟର ଦୂରରେ ବ୍ରାହ୍ମଣୀ ନଦୀ ପ୍ରବାହିତ ଏବଂ ଏହାର କୂଳେ ଯାଇଛି ଆଜି ରିଙ୍ଗବନ୍ଧ। ପୁରାତନ କାଳରୁ ଏ ପର୍ଯ୍ୟନ୍ତ ଅଛି ଏକ ବରଗଛ। ଏଠାରେ ପୂଜା ପାଆନ୍ତି ଦରିଆଚଣ୍ଡୀ। ଏହିଠାରେ ପୂର୍ବରୁ ଦରିଆ ସମୁଦ୍ର ଥିଲା ବୋଲି ତାଙ୍କୁ ଦରିଆଚଣ୍ଡୀ କୁହାଯାଏ। କିମ୍ବା ସାତଭାୟା ଆଡୁ ସ୍ଥଳଭାଗକୁ ଜଳଭାଗ ଗ୍ରାସ କରିବାକୁ ଠାକୁରାଣୀ ଏଠାକୁ ଆସି ଏହି ବରଗଛ ସ୍ଥଳୀରେ ପୂଜିତା ହେବାକୁ ପସନ୍ଦ କଲେ, ତାହା ଏକ ଦ୍ୱନ୍ଦ୍ୱ। ଆମେ କହୁ ଚଡ଼ ଚଡ଼ି ବରଗଛ। ଛୋଟବେଳେ ମୁଁ ଦେଖିଛି, ରଜର ପ୍ରଥମ ଦିନ ଅର୍ଥାତ୍ ପହିଲି ରଜଦିନ ନଦୀପାର ହୋଇ ଅନେକ ଲୋକ ଆରପାରିକୁ ଅପେକ୍ଷାରତ ସମୟରେ ପ୍ରବଳ ବୃଷ୍ଟିପାତ ହେଲା। ହଠାତ୍ ଅଦୃଷ୍ଟରୁ ଏକ ଚଡ଼ଚଡ଼ି ଆସିଲା। ପଡ଼ିଲା, କେହି ଜୀବିତ ନଥିଲେ। ତେଣୁ ଆମେ କହୁ ଚଡ଼ଚଡ଼ି ବରଗଛ। ଆଜି ରିଙ୍ଗ୍‌ବନ୍ଧର ଜିରୋ ମାଇଲ ସ୍ଥାନ। ସନ୍ଧ୍ୟା ସମୟ ଗଡ଼ିଗଲା ପରେ, ପଡ଼ିଲା ଜୁଆରର ଫେରନ୍ତା ସ୍ରୋତ ସମୁଦ୍ର ଅଭିମୁଖେ। ଭୁଟୁଭୁଟି। ଗୋଟିଏ ଛୋଟିଆ ଯନ୍ତ୍ରଚାଳିତ ଡଙ୍ଗା। କିରାସିନି ଦ୍ୱାରା ଚାଳିତ ଇଂଜିନ। ଆଗକୁ ଆଗକୁ ଚାଲିଲା। ଯାତ୍ରାର ମହତ୍ ଉଦ୍ଦେଶ୍ୟ ହେଉଛି ଧାମରେଇ ଯାତ୍ରା। ବେଳକୁ ବେଳ ରାତି ମାଡ଼ି ଆସିଲା। ଘୋର ଅନ୍ଧକାର ମଧ୍ୟରେ ନିସ୍ତବ୍ଧ ରାତ୍ରିରେ ଚାଲିଛି ଭୁଟୁଭୁଟି। ବ୍ରାହ୍ମଣୀ

ନଦୀରୁ ଅନ୍ୟଏକ ଶାଖାନଦୀ। ହଂସୁଆ ନଦୀ। ରାଜନଗର ପାର ହୋଇଗଲା। ରାତି ପାହିଲା ଭିତରକନିକା ଆରମ୍ଭ ହେଲା। ଆରମ୍ଭ ହେଲା ରାଜନଗର। ପୂର୍ବରୁ ଏହାର ନାମ କେରଡ଼ା ରାଜ୍ୟ ଥିଲା। ପାଇକମାନଙ୍କର ପ୍ରଶିକ୍ଷିତ କେନ୍ଦ୍ର। କେରଡା ରାଜ୍ୟ ଅର୍ଥାତ୍ କୋରଡ଼ାଗଡ଼, ରାଜଗଡ଼, ଭିତରଗଡ଼ ବାହାରଗଡ଼, ଗିଧାଗଡ଼, ଶିରୀଗଡ଼, ଧୋବେଇଗଡ଼, ହାଣ୍ଡିଆଗଡ଼, ବାଉଁଶଗଡ଼, ନଗଡ଼। ବ୍ରାହ୍ମଣୀ-ବୈତରଣୀ-ଖରସ୍ରୋତା, ହଂସୁଆ -ନଦୀମାନଙ୍କ ଦ୍ୱାରା ଖଣ୍ଡବିଖଣ୍ଡିତ ଦ୍ୱୀପର ଗାଁଗଣ୍ଡା। ଭୁଟୁଭୁଟି ଖେଳୁଆ ଦେଇ ଚାଲିଛି। ଖେଳୁଆର ଅର୍ଥ ସ୍ଥଳଭାଗ ନିକଟବର୍ତ୍ତୀ ନହୋଇ ଗଭୀର ସମୁଦ୍ରର ମୁହାଣରେ ପଞ୍ଚୁରାଇଙ୍କ ଠାରୁ ଧାମରେଇଙ୍କ ଅଭିମୁଖେ ଚାଲିଲା। କୁମ୍ଭୀର ଚାଷ ଦେଖିଲେ। ଏବେ ପଡ଼ିଲା ମୁହାଣ। ଏପାଖରୁ ସେପାଖ ଯିବା ପାଇଁ ପ୍ରାୟ ପାଞ୍ଚ କିଲୋମିଟର ଦୂରତ୍ୱର ଏକ ଗଭୀର ନୀଳ ଜଳରାଶିର ପ୍ରଶସ୍ତ କ୍ଷେତ୍ର। ସ୍ଥାନଟିର ନାମ ଘଡ଼ିଆମାଳ। ଏଭଳି ନାମର ତାତ୍ପର୍ଯ୍ୟ ହେଉଛି, 'ଘଡ଼ିଆଳ' ଏକ ଜଳଜନ୍ତୁ, ମାଳମାଳ ହୋଇ ଭାସୁଥାଆନ୍ତି। ହରିଚ, ମରିଚ, ମଗର, କୁମ୍ଭୀର, ଘଡ଼ିଆଳ ଏହି ଜୀବଜନ୍ତୁ ପୂର୍ଣ୍ଣ ଜଳଭାଗ। କଥାରେ ଢଗ ପକାନ୍ତି। "ଘଡ଼ିଆମାଳ, ହରିତ ମରିଚ ମାଳକୁ ମାଳ, ଘଡ଼ିଆମାଳ। ପକ୍ଷୀ ଉଡିଥିବେ ମାଳକୁ ମାଳ, ଘଡ଼ିଆମାଳ। କୁମ୍ଭୀର ଦେଖିବ, ମାଳକୁ ମାଳ, ଘଡ଼ିଆମାଳ। ଢିଙ୍କି ପଡ଼ିଥିବ ମାଳକୁ ମାଳ, ଘଡ଼ିଆମାଳ। ଡଙ୍ଗା ଚାଲୁଥିବ ମାଳକୁ ମାଳ, ଘଡ଼ିଆମାଳ।" ଭୁଟୁଭୁଟି ପହଞ୍ଚିଗଲା ଧାମରାରେ। ବତିଘର-ଜମ୍ବୁଦ୍ୱୀପ, ହୁଇଲର୍ ଦ୍ୱୀପ (ହୁକଟେଲା) ଅତିକ୍ରମ ଯାତ୍ରା କ୍ଷେତ୍ର। ଭୁଟଭୁଟି ଅପେକ୍ଷା କରି ନଦୀରେ ଆଶ୍ରୟ ନେଲା। ଚୁକ୍ତି ଅନୁଯାୟୀ ସମୟ ଅପେକ୍ଷା କଲା ଯାତ୍ରୀମାନେ ମାଆ ଧାମରେଇଙ୍କ ଦର୍ଶନ ସାରି ଗଲେ ବିଶ୍ରାମସ୍ଥଳକୁ। ବୁଲାବୁଲି କରି ଆନନ୍ଦ ଅନୁଭବ କଲେ। ଯାତ୍ରା ଦେଖିଲେ। ସ୍ଥାନଟି ନୂତନ ପରିଦର୍ଶନର କ୍ଷେତ୍ର। ସମୁଦ୍ରରେ ଜାହାଜର ଗତିପଥ ନିର୍ଣ୍ଣୟ ପାଇଁ ବତିଖୁଣ୍ଟର ଘୂର୍ଣ୍ଣାୟମାନ ଆଲୋକର ଦୃଶ୍ୟ ଅବଲୋକନ ସୃଷ୍ଟି କରେ। ଚାନ୍ଦିପୁର ଆଡକୁ ଦୂରରେ ରହି ସ୍ଥାନ ଓ ତାହାର ମାହାତ୍ମ୍ୟ ବିଷୟରେ ଅବଗତ ହେଲେ। ସମସ୍ତ ଆନନ୍ଦ ସର୍ବକୁଶଳ। "ମାତ୍ର ଏ ଆନନ୍ଦର ଅନ୍ତରାଳରେ ନିୟତିର କ୍ରୁର ଅଟ୍ଟହାସ୍ୟ ରହିଥାଏ, ଏକଥା ମନୁଷ୍ୟ ବୁଝିନଥାଏ। ସେଥିପାଇଁ ସାମୟିକ ସୁଖ-ଶାନ୍ତି-ଆନନ୍ଦ ଓ ଚକ୍ଷୁର ଆକର୍ଷଣରେ କେତେ ଯେ ନାରକୀୟ ଘଟଣା ବହୁଳ ଜୀବନ ପାଇଁ ସମୟ ଅତିବାହିତ କରେ ତାହା ଫଳେନ ପରିଚୟତେ।" ଖାରବେଳଙ୍କ ରାଜତ୍ୱ କାଳ ଥିଲା ପୂର୍ବଭାରତୀୟ ବନ୍ଦୀ। ୧୨୩୮-୬୪ ଉତ୍କଳର ଗଜପତି ଥିଲେ ନରସିଂହ ଦେବ।

କୋଣାର୍କ ମନ୍ଦିରର ନିର୍ମାତା । ଭୁଜବଳଙ୍କୁ ସମୁଦ୍ର ସୁରକ୍ଷା ଦିଆଗଲା, ମୟୁରଭଞ୍ଜରୁ ଆସିଥିବାରୁ ଭଞ୍ଜ ଉପାଧିରେ ଭୂଷିତ ହେଲେ ଓ କୁଜଙ୍ଗ ରାଜାଙ୍କ ରାଜକନ୍ୟା, କଣିକାଙ୍କୁ ବିଭାହେଲେ ରାଜରାଣୀଙ୍କ ନାମାନୁସାରେ ରାଜ୍ୟଟିର ମା' ଶ୍ରୀ କନକଦୁର୍ଗା-ରାଜାଙ୍କ ଅନୁରୋଧକ୍ରମେ ଶ୍ରୀଜଗନ୍ନାଥଙ୍କୁ ଏକ ମିଷ୍ଟାନ୍ନ ପ୍ରଚଳନ କରାଗଲା, ତାହା କାନିକା ହିସାବରେ ଜଣାଶୁଣା । ରାଜ୍ୟଟି ଯେପରି କନକ ଭୂଇଁ, ନାମ ହେଲା କନିକା । ଏକ ଢଗ ପ୍ରଚଳିତ, "ନଗଡ଼-ପାଷ୍ଟପଡା ତିନିକୂଆ, ତାକୁ ଯେ ନକହିପାରିବ, ସେ ନୁହେଁ କନିକା ପୁଅ ।" ସମୟ ହୋଇଗଲା । ଭୁଟୁଭୁଟି ପ୍ରତ୍ୟାବର୍ତ୍ତନ କରିବ ତାର ପୂର୍ବ ପରିଚିତ ଗନ୍ତବ୍ୟ ମାର୍ଗରେ ଉଦ୍ଦିଷ୍ଟ ସ୍ଥାନକୁ । ଚାଳକ ସମସ୍ତ ତଦାରଖ କାର୍ଯ୍ୟ ସମାପ୍ତ କଲେ । ଯେତେଜଣ ଯାତ୍ରୀ ଭୁଟୁଭୁଟିର ସହଯାତ୍ରୀ ଥିଲେ, ଅଧିକ ଗୋଟିଏ କାଷ୍ଠ ନିର୍ମିତ ଆଲମିରା ମଧ ନୂତନ ସହଯାତ୍ରୀ ହେବା ଫଳରେ ଭୁଟୁଭୁଟିକୁ ଅଧିକ ଜଳସ୍ତର ଗ୍ରାସ କଲା । ସୂର୍ଯ୍ୟାସ୍ତ ପୂର୍ବରୁ ଧାମରେଇ, ପଞ୍ଚୁରାଇରେ ପହଞ୍ଚିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ଯାନ୍ତ୍ରିକ ତ୍ରୁଟି ଯୋଗୁଁ ଭୁଟୁଭୁଟି ଗଭୀର ସମୁଦ୍ର ମୁହାଣର ମଧଭାଗରେ ଯାତ୍ରୀମାନଙ୍କ ଭାଗ୍ୟ ଉପରେ ଏକ ପରୀକ୍ଷା ଆରମ୍ଭ କରିଦେଲା । ଚଳନ୍ତି ଅବସ୍ଥାରେ ଭୁଟୁଭୁଟିକୁ ଜଳସ୍ତର ଯେତିକି ଗ୍ରାସ କରେ, ସ୍ଥିର ଅବସ୍ଥାରେ ସାଧାରଣତଃ ଅଧିକ ଗ୍ରାସ କରେ । ଭୁଟୁଭୁଟି ଲମ୍ବ ତିରିଶ ଫୁଟରୁ କମ୍ ଚଉଡ଼ା ସାତ ଫୁଟରୁ କମ୍, ଗଭୀରତା ପାଞ୍ଚ ଫୁଟରୁ କମ୍, ଯାତ୍ରୀ ସଂଖ୍ୟା ଚାଳକ ସହ ବାଇଶି ଜଣ ଏବଂ ଏକ ବୃହତ୍ ଧରଣର କାଷ୍ଠ ଆଲମିରା । ଏ ସମସ୍ତେ ହେଉଛନ୍ତି ଭୁଟୁଭୁଟିର ସହଯାତ୍ରୀ । ଦଶ-ବାର ଅଙ୍ଗୁଳି ଆଉ ଅଛି ଜଳସ୍ତରର ଉର୍ଦ୍ଧ୍ୱରେ । ସନ୍ଧ୍ୟା ଅନ୍ଧକାର ମାଡ଼ିଆସିଲା, ଆଉ କେହି ଭୁଟୁଭୁଟି ପଛରୁ ଅସୁନାହାନ୍ତି କିମ୍ବା ବିପରୀତ ଦିଗରୁ ଆସୁନାହାନ୍ତି । ଜୁଆର-ଭଙ୍ଗା ମଧରେ ସମତୁଲ୍ୟ ଅବସ୍ଥା ଆସିବାକୁ କିଛି ସମୟ ବ୍ୟତିକ୍ରମ ପରେ, ଭୁଟୁଭୁଟି ନିରବ ରହିଗଲା । ଚାଳକଙ୍କର ଜ୍ଞାନଶୂନ୍ୟ ହୋଇଗଲା, ଯାତ୍ରୀମାନେ ନିର୍ବାକ ହେଲେ । ମହାକାଶର ଅଗଣିତ ତାରାମଣ୍ଡଳୀ ଦପ୍‌ଦପ୍ ମିଟ୍ ମିଟ୍ କରି ଥଟ୍ଟାରେ ମଜା ଦେଖୁଥାନ୍ତି ଏହି ଯାତ୍ରୀମାନଙ୍କର । କେବଳ ସଂଖ୍ୟାଧିକ ଯାତ୍ରୀ ଥିଲେ ଗୋଟିଏ ପରିବାରରୁ, ଦଶଜଣ । ଅନ୍ୟମାନେ ବିଭିନ୍ନ ପରିବାରର ଜଣେ ଅବା ଦୁଇଜଣ । ଅନ୍ୟମାନେ ମନେ ମନେ ଭାବୁଥାଆନ୍ତି, ଆମେ ଗଲେ, ଆମ ପରିବାର ଗ୍ରାମରେ ଅଛନ୍ତି, ମାତ୍ର ଗୋଟିଏ ପରିବାରର ଦଶଜଣ । ଗ୍ରାମରେ ରହିଗଲେ ଓ ଅପେକ୍ଷା କରି ବସିଥିବେ ଯାତ୍ରୀମାନଙ୍କର ଫେରନ୍ତା ବାଟକୁ । କ'ଣ ସତରେ ସେମାନେ ଫେରିବେ ? କେତେ ଘଣ୍ଟା ପୂର୍ବରୁ ଯେଉଁ ଆନନ୍ଦ ହସ,

ଆଉ ଅଳ୍ପ ସମୟ ପରେ ନିୟତିର କ୍ରୁର ଅଟ୍ଟହାସ୍ୟ ଭଙ୍ଗା ଜୁଆର ସ୍ରୋତରେ ଭାସି ଭାସି ଯାଇ କେଉଁ ଏକ ଗଭୀର ଜଳରାଶିର ବିରାଟ ଢେଉରେ ଚିରଦିନ ପାଇଁ ଲୀନ ହୋଇଯିବେ। ନିର୍ବାକ ହଠାତ୍ ସମସ୍ତେ ଏ ଦୁନିଆକୁ ଭୁଲିଗଲେ-ଚିରପରିଚିତ ନିଜ ସଂସାରର ମୋହ ମାୟାକୁ ତୁଟାଇଦେଲେ। ତେବେ ରକ୍ଷାକର୍ତ୍ତା କିଏ ? ଭଗବାନ ଜଗନ୍ନାଥ। କେହି ଜଣେ ଯାତ୍ରୀ ଅନ୍ଧକାର ମଧ୍ୟରୁ ଭୋ ଭୋ ରଡ଼ିଛାଡି ଜଗନ୍ନାଥଙ୍କୁ ଡାକଦେଲେ, "ଭୁଜତଳେ ମୋତେ ରଖ ମହାବାହୁ, ବାହୁତଳେ ମୋତେ ରଖ। ବିପୁଳ ଭୁଜକୁ ବିସ୍ତାରି ଦେଲେ ଛାର-କି କରିପାରିବ ଦୁଃଖ। ମହାପ୍ରଭୁ। ଭୁଜତଳେ ମୋତେ ରଖ।" ଗାଇ ଚାଲିଲେ ଜଗନ୍ନାଥଙ୍କ ଜଣାଣ। ନିସ୍ତବ୍ଧ ନିର୍ବାକ୍। ମୋର ଦଶଜଣ ପରିବାରର ପିଲାଛୁଆ, ସେମାନେ ବୁଝନ୍ତି ଠାକୁର କହିଲେ, "ଆମର ବୁଢ଼ାବାବା, ଅର୍ଥାତ୍ ମହାପୁରୁଷ ବାବା ନିତ୍ୟାନନ୍ଦ ଗୋସାଇଁ।'ତାଙ୍କ ଦ୍ୱାରା ଲିଖିତ ଆରତ-ଧ୍ୱଂସନ "ପତିତଜନଙ୍କୁ ଉଦ୍ଧାରିବା ପାଇଁ ଉଡାଇ ଅଛି ପତାକା ବାହୁ ଟେକି ତୁମ୍ଭେ ବସି ଚାହୁଁ ଚାହୁଁ ବିପତ୍ତି କରୁଛ ଡକା-ବୁଢ଼ା ବାବା ହେ।" ନାଶ ଗଲେ ଆମ୍ଭେ ପରେ କି କରିବ-କରୁଣ ଭଣ୍ଡାର ଫେଇ - ଦୁଃଖୀ କଲେ ନାଶ ଅର୍ଜିବ କି ଯଶ - ପଛେ ଚଉବର୍ଗ ଫେଲ। ବୁଢ଼ା ବାବା ହେ। ଏମାନଙ୍କ ଆକୁଳ ନିବେଦନ ସତେଯେପରି ଜଗନ୍ନାଥଙ୍କ ନିର୍ଦ୍ଦେଶକ୍ରମେ ମାଆ ଧାମରେଇ ଏକ ଦ୍ରୁତଗାମୀ ଭୁଟୁଭୁଟି ପ୍ରେରଣ କଲେ। ଦୂରରୁ ଦିଶିଲା ଆଲୋକ। ସାମାନ୍ୟ କେତେ ମିନିଟ୍ ପରେ ଆସି ନିକଟ ପଥରେ ଅତିକ୍ରମ କରୁଥିବା ବେଳେ ଏମାନଙ୍କର କରୁଣ ନିବେଦନ ଶୁଣି ଗତିରୋଧ କରି ଏକ ରଜ୍ଜୁ ଫିଙ୍ଗିଦେଲେ। ସେହି ରଜ୍ଜୁହିଁ ଭଗବାନ ଓ ଭକ୍ତ ମଧ୍ୟରେ ପ୍ରେମ-ପ୍ରୀତି-ସ୍ନେହର ପବିତ୍ର ସଂପର୍କ। ଭଙ୍ଗାର ସ୍ରୋତ ପ୍ରଖର ହେବା ପୂର୍ବରୁ ଭୁଟୁଭୁଟି ଲାଗିଲା ଏକ ନିରାପଦ ସ୍ଥାନରେ। ଯେଉଁଠାରେ ଗମନାଗମନ ପାଇଁ ସବୁପ୍ରକାର ସୁବିଧା ଥାଏ। ତଥାପି ମହାବାହୁ ଜଗନ୍ନାଥଙ୍କ ଦୟା ଓ କରୁଣା ଶେଷ ହୋଇନଥାଏ। ସତେଯେପରି ପୂର୍ବରୁ ଆଦେଶ ପ୍ରଦାନ କରିଥାନ୍ତି। ଅପେକ୍ଷା କର, ମୋର ଭକ୍ତମାନେ ଆସୁଛନ୍ତି। ହଠାତ୍ ଭୁଟୁଭୁଟିଟି ଏତେ ବେଗରେ ଗତିକଲା ଯେ, କେଇଟି ମୁହୂର୍ତ୍ତ ମଧ୍ୟରେ ମୁହାଣକୁ ଅତିକ୍ରମ କରି ଚାଲିଗଲା। ଅଦୃଶ୍ୟ। ଠିକ୍ ସେହିଭଳି ଦୁଇଟି ଅପୋକ୍ଷାରତ ଟ୍ରେକର ନଦୀଘାଟ ଠାରୁ କନିକା-ଆଳିରାଜସଡ଼କରେ ଦ୍ରୁତଗତିରେ ଯାତ୍ରୀମାନଙ୍କୁ ଆଣି ଆମ ଗ୍ରାମ ନିକଟବର୍ତ୍ତୀ କଟକ-ଚାନ୍ଦବାଲି ରାସ୍ତାରେ ଅବରତଣ କରାଇବା ମାତ୍ରେ, କିଛି ଦାବି ନକରି ହଠାତ୍ ସ୍ଥାନ ତ୍ୟାଗକରି ଚାଲିଗଲା। ରାତ୍ର ଏକଟା ବେଳେ ମୋ ପରିବାରଙ୍କ ଠାରୁ ସମସ୍ତ ଅବଗତ ହୋଇ

'ନିର୍ବାକ' ହୋଇଗଲି । ଭଗବାନ ବାସୁଦେବ ଜଗନ୍ନାଥଙ୍କ ଆଦେଶ ପ୍ରତ୍ୟେକ ଜୀବନ ପାଇଁ, ସର୍ବ ଧର୍ମାନ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ । ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟମି ମା ଶୁଚଃ । ଶରଣାଗତ ବିବ୍ରତ ହେବା-ଦୁଃଖୀ କରିବା ଏକ କାରଣ ନୁହେଁ । ଏହା ଅଯଥା ଦୁଃଖୀ ।

*"ପରମ ମଙ୍ଗଳ ନାମ ଅମଙ୍ଗଳ ନାଶନ ସୁନ୍ଦର ଅଟେ ଯାର । ସେ ତ୍ରାହି କରିବେ, ସେ ତ୍ରହେି କରିବେ, ଅଘ ନାଶନ କମଳାବର ।"*

ଏହା ଏକ ରୋମାଞ୍ଚକର ଜଳଯାତ୍ରାର କାହାଣୀ । ମାତ୍ର ଏହା ଭିତରେ ଲୁଚିରହିଛି ଆତ୍ମନିବେଦନ ସହ ଆଧ୍ୟାତ୍ମିକ ଭାବ । ଭଗବାନ ଓ ଭକ୍ତଙ୍କ ମଧ୍ୟରେ ସାନ୍ନିଧ ଲାଭ । ପ୍ରଶ୍ନ ଉଠେ, 'ଏହି ଯାତ୍ରୀମାନେ ସେମାନଙ୍କର ଉଦ୍ଧାର ପାଇଁ ଭଗବାନଙ୍କୁ କିମ୍ବା ଜଗନ୍ନାଥଙ୍କୁ ଅବା ଧାମରେଇଙ୍କୁ ଅଥବା ମହାପୁରୁଷଙ୍କ ସହିତ କିଛି ଗୋଟାଏ ସର୍ତ୍ତମୂଳକ ଚୁକ୍ତି, ଅର୍ଥାତ୍ ବଡ଼ଭୋଗ ଦେବୁ ବା ଗଞ୍ଜେଇ ଦେବୁ ଅବା ମୁଆଁ ଦେବୁ କିମ୍ବା ବୋଦାବଳି ଦେବୁ ଉଚ୍ଚାରଣ କରିନାହାନ୍ତି । ମାତ୍ର ବିପଦଗ୍ରସ୍ତ ଯାତ୍ରୀଙ୍କୁ ରକ୍ଷା କରିଛନ୍ତି ଆସନ୍ନ ବିପଦରୁ । ଯେ ପ୍ରକୃତ ଭକ୍ତ-ଯେ ଭଗବାନଙ୍କ ସାନ୍ନିଧ ଲାଭ ପାଇଁ ଉଦ୍‌ବେଗ ପ୍ରକାଶ କରେ ଯେ ଆଶୀର୍ବାଦ ଚାହେଁ, କୌଣସି ସର୍ତ୍ତ ଆରୋପ ନକଲେ ମଧ୍ୟ ଭଗବାନ ନିଶ୍ଚୟ ଦୁଃଖୀ ବୁଝନ୍ତି । ହେ କରୁଣାମୟ ।

## ଆଳି ଶ୍ରୀ ଲକ୍ଷ୍ମୀ ବରାହ କ୍ଷେତ୍ର

ଅତୀତ କହେ, "ଶ୍ରୀ ଶ୍ରୀ ଲକ୍ଷ୍ମୀ ବରାହ ଜୀଉ ଆଳି ଓ ଡେରାବିଶର ପୁରାଣ ଓ ଇତିହାସ ପ୍ରସିଦ୍ଧ ଦେବତା" କିନ୍ତୁ ଏବେ ରାଜନୈତିକ ସୀମା ଛେଦ ହୋଇଛି । ଆଳି ଲକ୍ଷ୍ମୀ ବରାହ କ୍ଷେତ୍ର ଯାଜପୁର ବିରଜା କ୍ଷେତ୍ର । ଶ୍ୱେତ ବରାହ ଓ ଯଜ୍ଞ ବରାହ ସେଠାରେ ପୂଜା ପାଆନ୍ତି ବୋଲି ପୂର୍ବରୁ ଶୁଣିବାକୁ ମିଳୁଥିଲା । ଲକ୍ଷ୍ମୀ ବରାହ ଆଳିକୁ କିପରି ଆସିଲେ ତାର କିମ୍ବଦନ୍ତୀ ପଛରେ ଏକ ଆଧ୍ୟାତ୍ମିକ ଓ ଐତିହାସିକ ତଥ୍ୟ ମିଳେ । ଅତୀତ ସ୍ୱଷ୍ଟ କରିଦିଏ, ଏହା ପ୍ରାୟ ୧୭୪୦ ରୁ ୧୮୦୦ ମସିହାର ଘଟଣା । ସେତେବେଳେ ଆଳିର ରାଜାଥିଲେ ରାଚଭଞ୍ଜ । ରାଜା ଥିଲେ ଐଶୀଶକ୍ତି ସମ୍ପନ୍ନ ଆଧ୍ୟାତ୍ମିକବାଦୀ । ଲକ୍ଷ୍ମୀ ବରାହ ଦର୍ଶନ ଥିଲା ତାଙ୍କର ଦୈନନ୍ଦିନ ସର୍ବ ପ୍ରଥମ ମୁଖ୍ୟ କାର୍ଯ୍ୟ ଏବଂ ଦର୍ଶନ ଓ ପୂଜା ପରେ ରାଜକାର୍ଯ୍ୟ ପରିଚାଳନା ଏବଂ ତଦାରଖ କରିଥାନ୍ତି । ଆଳି ଓ ଯାଜପୁର ମଧ୍ୟରେ ଦୁଇଗୋଟି ନଦୀ ଅତିକ୍ରମ କରିବାକୁ ପଡେ ।

ଖରସ୍ରୋତା ଓ ତା'ର ଶାଖାନଦୀ କାଣାନଦୀ। ଏଥିପାଇଁ ଦୁଇଟି ନାବ ଓ ଦୁଇଟି ଅଶ୍ୱ ସଜାଗ ଥିଲେ। ଦିନେ ଜୀଉ ସ୍ୱପ୍ନାଦେଶ ପ୍ରଦାନ କଲେ, "ଆଉ ଆସେ ନାହିଁ ମୁଁ ଆଳିକୁ ଯିବି ଏବଂ ପଛେ ପଛେ ଯିବି," ତାହା ହିଁ ଆଜିର ନିଦର୍ଶନ ପରିବର୍ତ୍ତୀ ସମୟ ସାକ୍ଷ୍ୟ ଦିଏ ସୂର୍ଯ୍ୟବଂଶର ରାଜା ରାମକୃଷ୍ଣ ଦେବ ଆଜିର ମନ୍ଦିର ବା ଦେଉଳର ନିର୍ମାତା ଥିଲେ। ରାଜଭଟ୍ଟ ଶାସନ କ୍ଷେତ୍ରରୁ ଅବ୍ୟାହତି ନେଇ ତପସ୍ୟାରେ ବିଜୟ ନଗରଠାରେ ଅବସ୍ଥାନ କଲେ ଓ ସିଦ୍ଧ ପୁରୁଷ ରାଜଭଟ୍ଟ ସେଠାରେ ପୂଜା ପାଆନ୍ତି। (ଅତୀତରେ ମଠ ମନ୍ଦିରରେ ବୟସ୍କ ଅଭିଜ୍ଞମାନଙ୍କ ଦ୍ୱାରା ଏହି ତଥ୍ୟମାନ ସଂଗ୍ରହ କରାଯାଉ ଥିଲା ଓ ଆଲୋଚନା ହେଉଥିଲା। ଶ୍ରୀମଦ୍ ଭାଗବତର ଅଷ୍ଟମ ନବମ ସ୍କନ୍ଧରେ ଯେଭଳି ବଂଶାନୁକ୍ରମଚରିତ ପ୍ରାତସ୍ମରଣୀୟ ପୂଜ୍ୟ ଜଗନ୍ନାଥ ଦାସ ଲିପିବଦ୍ଧ କରିଛନ୍ତି, ତାହା ସମାଜକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପରିବାରରେ ବଂଶଧରମାନେ ଓ କନିଷ୍ଠମାନେ ଶିକ୍ଷା କରୁଥିଲେ ଓ ଅତୀତର ସଂସ୍କୃତି ଜୀବିତ ରହୁଥିଲା। ସେଇଥିପାଇଁ କୁହାଯାଏ, "ଚାଟଘର ପୁଅ ଚାଟ ଓ ଭାଟ ଘର ପୁଅ ଭାଟ।" କିନ୍ତୁ ଆଜିକାଲି......। ଦେଉଳର ଉଚ୍ଚତା ୯୮ ଫୁଟ। ଏଠାରେ ମହାଦେବ-ଶ୍ରୀଚୈତନ୍ୟ-ନୃସିଂହ-ବାମନ-ରାଧାକୃଷ୍ଣ-ସାବିତ୍ରୀ-ଦୁର୍ଗା-ମୂର୍ତ୍ତିଗୁଡିକ ପୂଜା ପାଆନ୍ତି। ମନ୍ଦିର ଓ ତତ୍ ସଂଲଗ୍ନ ଭୂମିର ପରିମାଣ ପ୍ରାୟ ଦଶ ଏକର। ଜୀଉଙ୍କର ଅନେକ ଚାଷଜମି ଅଛି। ଜୀଉଙ୍କ ପଶ୍ଚିମ ପାର୍ଶ୍ୱରେ ଏକ ବିରାଟ ପୁଷ୍କରିଣୀ ବିଦ୍ୟମାନ। ପଦ୍ମଫୁଲର ଶୋଭାରେ ମଣ୍ଡିତ କେହି କେହି କହନ୍ତି, ପଦ୍ମ ସାଗର ଓ କେହି କେହି କହନ୍ତି ପଦ୍ମପ୍ରସାଦ। ସେଦିନର ସାଥୀଥିଲେ ଶ୍ରୀଯୁକ୍ତ ସଦାନନ୍ଦ ଲେଙ୍କା। ଶିକ୍ଷକ ବନ୍ଧୁ ଯୁକ୍ତିବାଢନ୍ତି ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କର ବିନ୍ଦୁସାଗର ବୋଲି ପରିଚିତ, ଏହାକୁ ପଦ୍ମସାଗର ବୋଲି ମାନ୍ୟତା କାହିଁକି ଦିଆ ନଯିବ ? କିନ୍ତୁ, ପବିତ୍ର ପଞ୍ଚ ସରୋବର ତାଲିକା। ମଧରେ-ମାନସରୋବର-ନାରାୟଣ ସରୋବର-ପମ୍ପା ସରୋବର-ପୁଷ୍କର ସରୋବର। କିନ୍ତୁ ଏଗୁଡିକ ପାହାଡ ପର୍ବତରେ ଅବସ୍ଥିତ। ଜୀଉଙ୍କର ଦୁଇଗୋଟି ପର୍ବ ପାଳନ କରାଯାଏ। ମାଘ ମାସ ଶୁକ୍ଳପକ୍ଷ-ଦ୍ୱାଦଶୀ ତିଥିରେ ବରାହୀ ଦ୍ୱାଦଶୀ ଓ ଅନ୍ୟଟି ବରାହ ଜନ୍ମ। ହଜାର ହଜାର ଦର୍ଶନାଭିଳାଷୀ ଭକ୍ତବୃନ୍ଦଙ୍କୁ ଜୀଉଙ୍କର ଅନ୍ନ ପ୍ରସାଦ ବିତରଣ କରାଯାଏ। ମନ୍ଦିରର ସୁ-ପରିଚାଳନା ପାଇଁ ଦୁଇଟି ଉଚ୍ଚସ୍ତରୀୟ କମିଟି ଅଛି। ଗୋଟିକର ଅଧ୍ୟକ୍ଷ ରାଜବାଟି ତରଫରୁ ସମୟାନୁଯାୟୀ ରାଜା ଓ ଅନ୍ୟଟି ପଣ୍ଡାମାନଙ୍କ ତରଫରୁ ବଡପଣ୍ଡା। ଛାତ୍ର ଜୀବନରେ ଦେଖିଛୁ ରଥଯାତ୍ରା। ରାଜବାଟି ଠାରୁ ଜୀଉମନ୍ଦିର ଓ ପ୍ରତ୍ୟାବର୍ତ୍ତନ। ଆଜି ଅଞ୍ଚଳର

ଅଧିବାସୀବୃନ୍ଦ ଆସିଥାଆନ୍ତି କାରଣ ଗମନାଗମନର ସୁବିଧା ନଥାଏ ଏବଂ ଚତୁପାର୍ଶ୍ୱରେ ନଦୀ ଓ ମଧ୍ୟଭାଗସ୍ଥ ନାଳ। ତଥାପି ଆଳି ରଥଯାତ୍ରା ଆମ ଅଞ୍ଚଳ ପାଇଁ ସୁପ୍ରସିଦ୍ଧ ପର୍ବ। ଏହିଠାରେ କେବଳ ଦୁର୍ଗାପୂଜା ହେଉଥିଲା। ଏବେ ବି ହେଉଛି କିନ୍ତୁ ଅନ୍ୟସ୍ଥାନରେ ବି ହୁଏ। ଏଠାରେ କିନ୍ତୁ ପଶୁବଳୀ ଦିଆଯାଏ ନାହିଁ ଓ ଏହି ଅଞ୍ଚଳର କୌଣସି ସ୍ଥାନରେ ମଧ ନୁହେଁ। ଏହା ହେଉଛି ରାଜବାଟିର ଦୁର୍ଗା ପୂଜା। ସୁପ୍ରସିଦ୍ଧ ପାଲା ଗାୟକ ଆସନ୍ତି। ରାଜବାଟିରେ ବିଭିନ୍ନ ସ୍ଥାନରେ ସେମାନେ ପାଲା କରୁଥିଲେ। ହରିନାଥ-ନଗିନାଥ, ପିତା-ମଣିନାଥ, ନିରଞ୍ଜନ କର, ଅବଶିଷ୍ଟ ବ୍ୟକ୍ତିତ୍ୱଙ୍କ ନାମ ଅତୀତ କହିବ। ରାଜା ବ୍ରଜସୁନ୍ଦର ଦେବଙ୍କ ସମୟରେ ଜାକଜମକରେ ପାଳନ କରାଯାଉଥିଲା। ବେଢାଣ ଓ ବୋହୁମାନେ ଶାଢୀ ଏବଂ ବୁଢ଼ାମାନେ କାନ୍ଧରେ ନାଲି ଗାମୁଛା ଛୋଟ ଲୁଗା ଓ ଯୁବକମାନେ ହାତରେ ଛତା ଧୋତି ଚାଦର ପିନ୍ଧି ମାଳମାଳ ଯାଉଥିବା ଓ ଫେରୁଥିବାର ଦୃଶ୍ୟ ଏବେ ମନେ ପଡେ। ମୁଢ଼ୀ-ଉଖୁଡା-ଖଜା ଜିଲାପି-ପୁରୀ, ବୁଟଡାଲି, କଖାରୁ ବିଲାତି ଆଳୁ ତରକାରୀ, ଆହା କି ମଜା। ଆହୁରି ମଜା ଅନ୍ଧାର ରାତିରେ ରାସ୍ତାରେ ଯାଉଥିବା ବା ଫେରୁଥିବା ମରଦ ଟୋକାଙ୍କ ବାଢୁଅ ଝିଅଙ୍କ ପ୍ରତି ଶାଢୀ ସିଦ୍ଧିରେ ପଶି ଦୌରାତ୍ମ୍ୟ ଭାବର ପ୍ରଦୁର୍ଭାବ। ହସି ହସି ବେଦମ୍। ଅନ୍ଧକାର ମଧ୍ୟରେ ଚୋର କି ଧରାପଡେ ? ରାଜା ରାଜୁଡା ଶାସନର ଅବସାନ ପରେ ଓ ପୂର୍ବରୁ ଯାହା ଯାହା ଥିଲା ଏବେ ତାର ଏତିହାସିକ ସତ୍ୟାସତ୍ୟର ନିଦର୍ଶନ ଦୃଷ୍ଟି ଗୋଚର ହୁଏ। ରାଜବାଟୀଟି ଆମମାନଙ୍କ ପାଇଁ ଏକ ଦର୍ଶନୀୟ ସ୍ଥାନ। ଉଚ୍ଚ କମ୍ପାଉଣ୍ଡ ଇଟାର ପାଚେରୀ, ଖଜଣା ଖାନା ବିଚାରାଳୟ, ଦେବୀ ମଣ୍ଡପ ଆମର ପୁରାତନ ରାଜବାଟି ଗଡଖାଇ ବାଘଘର, ଘୋଡାଶାଳ, ଉତ୍ତରପାର୍ଶ୍ୱରେ ପ୍ରବାହିତ ଖରସ୍ରୋତାର ନୀଳ ଜଳରାଶି। ନଦୀର ଗର୍ଭରେ ଲୀନ ଜଳରାଶି। ନଦୀର ଗର୍ଭରେ ଲୀନ ହୋଇଚି ଭଞ୍ଜ ରାଜାଙ୍କ ତତ୍କାଳୀନ ରାଜବାଟି। ସେହିସ୍ଥାନର ବର୍ତ୍ତମାନ ପରିଚିତ ନାମ, 'ଡିଆ-ବା-ବରୁଣାଡିଆ”-ପିଞ୍ଚାର ସାହୀ। ଜଣାଶୁଣା ଯୋଗୀ ରାଜାଙ୍କ ରାଜବାଟି। ସେହି ସମୟଠାରୁ ଅବ୍ୟବହୃତ ଗଡଖାଇ ଅତୀତ ରାଜତ୍ୱ କାଳର ନିଦର୍ଶନ। ତାହା ହିଁ ସେହିସ୍ଥାନଟିର ନାମ 'ଆଳି' ଯଦୁନାଥ ଦେବ ଆଳି ଅଞ୍ଚଳରେ ପ୍ରଥମେ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ। ବର୍ତ୍ତମାନର ଦୃଶ୍ୟମାନ ରାଜବାଟିଟି ସୂର୍ଯ୍ୟବଂଶୀୟ ରାଜାମାନଙ୍କ ଦ୍ୱାରା ନିର୍ମିତ। ଏହାର ନାମ ଲୋକାପଡା। ପୂର୍ବରୁ ଏହିସ୍ଥାନରେ ଲୋକମାନଙ୍କର ବସତି ଥିଲା ଓ ପରେ ଏହି ସ୍ଥାନଟି ନାମ ବୋଧ ହୁଏ ଲୋକାପଡା ହୋଇଛି। ବର୍ତ୍ତମାନର ରାଜା ହେଉଛନ୍ତି ମାନ୍ୟବର ବ୍ରଜ କିଶୋର ଦେବ। ଗୋଟିଏ

ଡଗ ଲୋକମାନଙ୍କ ତୁଣ୍ଡରୁ ଶୁଣିବାକୁ ମିଳେ । 'ଆଜି-ଓକାଭରେ -ସିଙ୍ଗରି-ମହୁ, ଆଉ ସବୁ ଗାଁ ପଛକୁ ଥାଉ' । ମହାଶୟ ଲେଙ୍କା ବାବୁଙ୍କ ପ୍ରଶ୍ନର ଉତ୍ତର ଠାକୁରଙ୍କ ବଡପଣ୍ଡା ମହୋଦୟ କହନ୍ତି, ଆଳିର ସଦର ମହକୁମାଠାରୁ ଓକାଇର ପ୍ରାୟ ୨୦ କି.ମି ଦୂରତ୍ୱ-ସିଙ୍ଗିରି ପ୍ରାୟ ୧୦ କି.ମି ମହୁପ୍ରାୟ ୧୨ କି.ମି ଦୂରତ୍ୱରେ ଅବସ୍ଥିତ । କିନ୍ତୁ ଡେରାବିଶ ୮ କ୍ରୋଶ । କିନ୍ତୁ ତାହା ଆଳିର ରାଜତନ୍ତ୍ର ଦ୍ୱାରା ଶାସିତ ଇଲାକା ଥିଲା । ଆଳିର ପଶ୍ଚିମପାର୍ଶ୍ୱ ଅଞ୍ଚଳ ସହିତ ଡେରାବିଶର ପୂର୍ବପାର୍ଶ୍ୱ ଅଞ୍ଚଳ ଦ୍ୱିଖଣ୍ଡିତ ନଥିଲା । ଏହି ଢଗ ସୂଚନା ଦିଏ ଯେ ଅନ୍ୟ ଗ୍ରାମ ଗୁଡିକୁ ଉସ୍ୱାଯାଇଛି । କାରଣ ଶିକ୍ଷା-ସ୍ୱାସ୍ଥ୍ୟ-କୃଷି-ବ୍ୟବସାୟୀ-ସାମାଜିକ ଚଳନି-ଶାସନ- ବିଧି-ବିଚାର ଧାରା-ଶାସନ-ଶାନ୍ତି ଓ ଶୃଙ୍ଖଳା-ଗମନା-ଗମନ- ଲୋକସଂଖ୍ୟା ଇତ୍ୟାଦିରେ ଆଗୁଆ ଥିଲା । ଅନ୍ୟ ଗୋଟିଏ ଢଗ, "ସିଙ୍ଗିରିରୁ ସିଂହଦରକା ପର୍ଯ୍ୟନ୍ତ ଲୋକବାଣୀର ଅର୍ଥ ଏହା ହୋଇପାରେ ମଠ, ମନ୍ଦିର ସାଧୁ ସନ୍ଥମାନଙ୍କର ଆଦର୍ଶନୀତି ଓ ବାଣୀରେ ଆଲୋକିତ ଥିଲା । ଫଳରେ ସମାଜ ଶୃଙ୍ଖଳିତ ସଂସ୍କୃତିର ବିକାଶ ହେଉଥିଲା ତତ୍କାଳୀନ ଆଜି ବୈତରାଣୀ ନଦୀଠାରୁ ବ୍ରାହ୍ମଣୀ ନଦୀ ପର୍ଯ୍ୟନ୍ତ ଥିଲା କିନ୍ତୁ ରାଜ କନିକା ବୋଲି କିଛି ନଥିଲା । ତାହା ଆଜିର ଶାସନାଧୀନ ଇଲାକାର ଅନ୍ତର୍ଭୁକ୍ତ ଥିଲା । ଡେରାବିଶ, ଅର୍ଥାତ୍ ଆକବର ଶାସନର ପ୍ରାରମ୍ଭରେ ଏଠାରେ ଡେରା ଅର୍ଥାତ୍ ତମ୍ବୁ ବା ଛାଉଣି ୨୦ ଟିରେ ସୈନ୍ୟ ସାମନ୍ତ ରହୁଥିଲେ । ଡେରାବିଶ ଆମ ଓଡ଼ିଆ ଶବ୍ଦ ନୁହେଁ କିନ୍ତୁ ଏହା ପାର୍ଶୀଭାଷାର ଶବ୍ଦ । ଆଳିର ରାଜନୈତିକ ଚିତ୍ର କହେ, ଭାରତ ସ୍ୱାଧୀନତା ପୂର୍ବ ଓ ପରେ ବିଧାନ ସଭାକୁ ଓ ଲୋକସଭାକୁ ରାଜ ପ୍ରତିନିଧି ହିସାବରେ ଗୋବିନ୍ଦ ସିଂହ, ନବକୃଷ୍ଣ ଚୌଧୁରୀ, ସହଦେବ ଦାସ-ରାଜମାତା ରାମରାଜ କୁମାରୀ- ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ-ଡାକ୍ତର ଦିବାକର ନାଥ ଶର୍ମା-ଶରତ ଦେବ-ଦୋଳ ଗୋବିନ୍ଦ ନାୟକ- ରାଜାମାତା-ସୁଶ୍ରୀ ଦେବୀ ତାଙ୍କର କନିଷ୍ଠ ପୁତ୍ର ଓ ବର୍ତ୍ତମାନର ନିର୍ବାଚିତ ବିଧାନ ସଭାର ସଦସ୍ୟ ମାନ୍ୟବର ପ୍ରତାପ କେଶରୀ ଦେବ ମହୋଦୟ । କିନ୍ତୁ ଡେରାବିଶ ନୁହେଁ । ପୂର୍ବରୁ ଆଳିର ବିମାନ ଓଳକଣା ମେଳନର ପ୍ରଥମ ସ୍ଥାନରେ ଆସୀନ ହେଉଥିଲେ । ହୋଲି ପାଇଁ ବିମାନଟିକୁ ୨୦ ଜଣ ଗୋପାଳକ ଲୋକ-ଚାନ୍ଦବାଲି ରାସ୍ତାରେ ହୋଲିଗୀତ ବୋଲୁଥାନ୍ତି, ଖୁବ୍ ଆନନ୍ଦ ଲାଗେ । ହୋଲିଗୀତ ଦୁଇଧାଡି ଶୁଣନ୍ତୁ, ପିଲା ଦିନର କଥା ମନେପଡେ । "ମାରନା ମାରନା ପିଚକରୀ-ମାରନା ମାରନା ପିଚକାରୀ" ବା "ହୋଲି ଖେଳେ ରଘୁବିରା ହୋ ହୋଲିଖେଳେ" ଇତ୍ୟାଦି ଇତ୍ୟାଦି । ସଡକ ପଥରେ ଗର୍ଜନ କରେ ବାଜୁଥିବ ବୀରବାଜା, ବ୍ରଜସୁନ୍ଦର ଦେବ ବସିଥିବେ

ଚାମୁଡାଳରେ, ଦୁଇ ପାର୍ଶ୍ୱ ରାସ୍ତାରେ ଦଣ୍ଡାୟମାନ ଥିବେ ଆବାଳ ବୃଦ୍ଧ ବନିତା। ସତରେ ଏତେ ଦିନର କଥା ମନେ ଅଛି ? ଆଖି ଯାହା ଦେଖିଥିଲା। ବାକୀ ଯାହା ଶୁଣିଥିଲା। ରାଜବାଟି ପୂର୍ବପାର୍ଶ୍ୱରେ ଆମର ଅତି ପ୍ରିୟ ମୁସଲମାନ ଭାଇମାନଙ୍କର ଚାରିଗୋଟି ମହଲା ଯଥା-କଳାପହାଡ ମହଲା-ରସୁଲଗଡ-ପଦନପୁର-ଗୋପ। ହିନ୍ଦୁଙ୍କ ହୋଲିପର୍ବ ଓ ମୁସଲମାନ ଭାଇଙ୍କ ମହରମ ପର୍ବ ଉଭୟରେ ଆନନ୍ଦର ସହିତ ପାଳନ କରୁଥିଲୁ। ଛାତ୍ର ଜୀବନରେ ଦେଖିଛି ଓ ମିଶିଛି ହସି ମୁଦିନ-ନୁରମହମ୍ମଦ ଓ ବାସତ୍‌ବାବୁ। ଅତି ଉଦାର-ଭଦ୍ରଲୋକ ଛାତ୍ରବତ୍ସଳ-ପରୋପକାରୀ। ଆଳିରିଙ୍ଗ ବନ୍ଦର ପୃଷ୍ଟପୋଷକ ଥିଲେ ହସି ମୁଦିନ ଓ ସତନ୍ତ୍ର ବ୍ୟକ୍ତିତ୍ୱର ଅଧିକାରୀ ଧୌଯ୍ୟ ମୁଲକରେ ଗାନ୍ଧୀ ସହଦେବ ଦାସ। ଅଣ-ମଞ୍ଜୁର ପ୍ରାପ୍ତ ଥିଲା ଆଳି ହାଇସ୍କୁଲ ଓ ପ୍ରଧାନ ଶିକ୍ଷକ ଥିଲେ ଗଙ୍ଗାଧର ରାଉତ, ଓଃ ବାବା, କିମାଡ ? ନିଷ୍ଠୁର ବ୍ୟକ୍ତିତ୍ୱର ଅଧିକାରୀ। ତଥାପି ପାଠ ପଢିବାକୁ ପଡିବ। ତାଙ୍କର ଆତ୍ମାକୁ କୋଟି କୋଟି ଥର ପ୍ରଣିପାତ କରେ। ବନ୍ୟା-ବାତ୍ୟା-ମରୁଡି ଅନାଟନ ଦ୍ୱାରା ଧ୍ୱସ୍ତ ବିଧ୍ୱସ୍ତ ଆଳିକୁ ପ୍ରଥମ ଥର ପାଇଁ ବ୍ୟୋମଯାନରେ ଉଡିଆସିଥିଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ। ବିରେନ୍ ମିତ୍ରଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ତତ୍କାଳରେ ସର୍ବପ୍ରଥମେ ବିଦ୍ୟୁତ୍ ସଂଯୋଗ ହୋଇଥିଲା। ଲକ୍ଷ୍ୟଥିଲା ଉଠାଜଳସେଚନ ମାଧମରେ ଖାଦ୍ୟଶସ୍ୟର ଅଭାବନୀୟ ଅବସ୍ଥାକୁ ସୁଧାରିବା ଓ ଭରଣା କରିବା। ସେତେବେଳେ ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ର-ଆଳିର ବିଧାୟକ ଡାକ୍ତର ଦିବାକର ନାଥ ଶର୍ମା ମନ୍ତ୍ରୀ ପ୍ରହଲ୍ଲାଦ ମଲ୍ଲିକ ସିଙ୍ଗିରିଗ୍ରାମ ପଞ୍ଚାୟତରେ ସରପଞ୍ଚ ପୂର୍ଣ୍ଣଚନ୍ଦ୍ର ସାହୁଙ୍କ ଉପସ୍ଥିତିରେ ଧାନମଣ୍ଡଳ ବାଲିପଡିଆରେ ବିରାଟସଭା ହେଲା ଓ ଢୋ ଢୋଇଆଠାରେ ପ୍ରଥମେ ଯୋଜନାର ରୂପରେଖ ଉଦ୍‌ଘାଟନ ସହ କାର୍ଯ୍ୟକାରୀ କରାଗଲା। ରାଜା ସାହେବ ଶରତକୁମାର ଦେବଙ୍କ ସମୟରେ କଟକ-ଚାନ୍ଦବାଲି ସଡକରେ ବ୍ରାହ୍ମଣୀ-ଖରସ୍ରୋତା-ବୈତରଣୀ ନଦୀ ଉପରେ ପୋଲର ଶୁଭାରମ୍ଭ ସହ ଆଜି ପତ୍ରପୁର ଘାଟ ପର୍ଯ୍ୟନ୍ତ ବସ୍‌ଚଳାଚଳ ହେଲା। ତାଙ୍କ ପ୍ରତିନିଧିତ୍ୱ ସମୟ ଚିରସ୍ମରଣୀୟ। ବ୍ରାହ୍ମଣୀ ସେତୁର ପ୍ରଥମ ଖମ୍ବ ତାଙ୍କର କୀର୍ତ୍ତିକୁ ସମ୍ମାନ ଜଣାଏ। ଲକ୍ଷ୍ମୀ ବରାହ ଦେଉଳର ଦକ୍ଷିଣ ପାର୍ଶ୍ୱରେ ଅତୀତ ଆଳି ଇତିହାସ କୀର୍ତ୍ତିସ୍ତମ୍ଭର ସମାଧି ବିଦ୍ୟମାନ। ପ୍ରଥମ ରାମକୃଷ୍ଣଦେବ-ବିଦ୍ୟମାନ। ପ୍ରଥମ ରାମକୃଷ୍ଣଦେବ-ନିଳକଣ୍ଠ ଦେବ-ପଦ୍ମନାଥ ଦେବ-ପ୍ରତାପରୁଦ୍ର ଦେବ-ବ୍ରଜସୁନ୍ଦର ଦେବ-ଚନ୍ଦ୍ରଭାନୁ ହରିଶ୍ଚନ୍ଦ୍ର ଦେବ-ଶରତ କୁମାର ଦେବ (୧୮୦୯-୧୯୪୧-୨୫.୦୩.୧୯୮୮) ବ୍ୟକ୍ତି ବିଶେଷର

ପରିଚୟ ହୁଏତ ନିଜସ୍ୱ ହୋଇପାରେ, ଅଥବା ନିଜର ବଂଶଧରମାନଙ୍କ ପାଇଁ ପରିଚିତ ହେବା ସହଜ, ମାତ୍ର ସାମାଜିକ ସ୍ତରରେ ପରିଚିତ ହେବା ପାଇଁ କିଛି ସେବାମୂଳକ କାର୍ଯ୍ୟକ୍ରମ ହେବା ବିଧେୟ। ଏହି କାର୍ଯ୍ୟକ୍ରମ ରାଜନୈତିକ ସେବା- ସ୍ୱାସ୍ଥ୍ୟଗତ ସେବା ବଦାନ୍ୟତା-ବୈଜ୍ଞାନିକ ଚିନ୍ତାଧାରାର ବିକାଶ ମୂଳକ ସେବା- ଅକ୍ଷମ ପାଇଁ ସମୟ ଓ ଆର୍ଥିକ ସେବା-ରୋଗୀସେବା-ମଠ, ମନ୍ଦିର, ଦେଉଳ, ସାଂସ୍କୃତିକ ସେବା- ଯାତ୍ରୀମାନଙ୍କ ସେବା ବାଳସେବା-ଇତ୍ୟାଦି ଇତ୍ୟାଦି ଦ୍ୱାରା ମନୁଷ୍ୟର ବିକାଶ ହୋଇ ପୂର୍ଣ୍ଣାଙ୍ଗ ପ୍ରାପ୍ତ ମନୁଷ୍ୟରେ ପରିଣତ କରାଏ। ଏ ଅଞ୍ଚଳରେ ପୂର୍ଣ୍ଣଚନ୍ଦ୍ର ସାହୁ ଥିଲେ ଜଣେ ଆଦର୍ଶ ଓ ସର୍ବସେବକ ଓଡିଶାର ଆଦର୍ଶ ପାଞ୍ଚାୟତ ପାଇଁ ଆଣିଥିଲେ ସମ୍ମାନଜନକ ପ୍ରଥମ ପୁରସ୍କାର। "ସିଙ୍ଗିରିରୁ ସିଂହ-ଦରଜା, ଅର୍ଥାତ୍ ପୁରାତନ ଯୁଗର ଆଳିର ଆଧାତ୍ମିକ ଇତିହାସ ମହାପୁରୁଷ ନିତ୍ୟାନନ୍ଦ ଗୋସାଇଁଙ୍କ ବିଷୟରେ ଉପସ୍ଥାପନ କରାଯାଇଥିଲା। କବିବର ରାଧାନାଥ ରାୟଙ୍କ ଆଳି ପରିଦର୍ଶନ କାଳୀନ ଅଭିଜ୍ଞତା ତାଙ୍କ ଗ୍ରନ୍ଥାବଳୀରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି," ବରାହ ପୂଜିତ ବାଲିପୂର୍ଣ୍ଣ ଆଳି କ୍ଷତ୍ରୀକୂଳ ଯାର ମହାବୀର୍ଯ୍ୟଶାଳୀ"। କିନ୍ତୁ, ସମୟ ବଦଳି ଯାଇଛି। (ଯେଦି କୌଣସି ତଥ୍ୟ ପ୍ରଦର୍ଶନରେ ତୃଟି ରହିଯାଇଥାଏ, ଦୟାକରି ନିର୍ଦ୍ଦେଶ ଦିଅନ୍ତୁ।)

## ବିଶ୍ୱ ମାତୃ-ପିତୃ ଦିବସ ପାଳନ - ୧

ବର୍ଷ ମଧରେ ଏତେ ସବୁ ପାଳନ ପଡିଲାଣି ଯେ, ଆଉ ନିସ୍ତାର ନାହିଁ। କ୍ୟାଲେଣ୍ଡରରେ ମୁଣ୍ଡୁଳି ମାରି ମାରି ଶେଷଦିନରେ ପହଞ୍ଚିଲା ବେଳକୁ ଅର୍ଦ୍ଧରାତ୍ରରେ ପୁରୁଣା ବର୍ଷ ପାଇଁ ବିଦାୟପାଳନ କରୁ କରୁ ନୂତନ ବର୍ଷକୁ ଅଭିନନ୍ଦନ ବି ଏକ ପ୍ରକାରର ପାଳନ ମଧ କରୁ। ବୁଢା ଯେତେବେଳେ ମରିଗଲା ନୂଆ ବୋହୁ ଠିକ୍ ପରେ ପରେ ପୁଅଟିଏ ଜନ୍ମ ଦେଲା। ବୁଢା ପାଇଁ କାନ୍ଦିବେ ନା ପୁଅ ପାଇଁ ଆନନ୍ଦ ହେବେ ? ଯିଏ ତ ଜନ୍ମ ହୁଏ ସେ ତ ମରେ। କାନ୍ଦିବ କାହିଁକି ହସିବ କାହିଁକି ? ହେଲେ ବୁଢୀମନଙ୍କୁ ପାଏ ନାହିଁ, ବୁଢାଟି ପାଇଁ କେତେବର୍ଷ ବିତିଗଲାଣି ଶଙ୍ଖା ସିନ୍ଦୁର ପିନ୍ଧିଥିଲା ଏବେ ଖାଲି ହାତକୁ ଚାହିଁ କାନ୍ଦୁଛି। ସେପଟେ ନୁଆବୋହୁ ପୁଅର ଗୁଲୁଗୁଲିଆ ମୁଖ ଦେଖି ଭବିଷ୍ୟତ ପାଇଁ କେତେ ନୂଆ ନୁଆ ସପ୍ନ ଦେଖୁଛି। ହେଇ! ଦେଖୁଛ ନା, ତମ ପୁଅ। ଠିକ୍ ତମରି ଭଳି ଦେଖା ଯାଉଛି। ଶୁଣ ମା ବାପା ତ ବୁଢା ହୋଇଗଲେ, ଦିନେ ମରିଥାନ୍ତେ,

ଏବେ ମଲେ କ୍ଷତି କ'ଣ ? ତମକୁ ଲାଜ ଲାଗୁନାହିଁ ? ପୁଅକୁ ଦେଖ । ହସୁଛି । ବର୍ଷରେ ଥରେ ବିଶ୍ୱ ମାତୃ ଦିବସ ପାଳନ କଲୁ । ପିଲାମାନେ ମାଆକୁ ଏତେ ଭଲ ପାଆନ୍ତି ଯେ, ଖବରକାଗଜବାଲା ଅନ୍ୟ ସମ୍ବାଦ ପ୍ରକାଶ କରିବାକୁ କୁଣ୍ଠାବୋଧ କଲେ । କାଗଜ କଲମରେ ଏତେ ଭଲ ପାଆନ୍ତି ? କଅଁଳିଆ ବୟସର ପିଲା । ଅଳ୍ପଦିନ ହେଲା କ୍ଷୀର ଛାଡିଛନ୍ତି । ଭୁଲି ନାହାନ୍ତି ମାଆର ସ୍ନେହ । ପାଗଳାରେ, ଆଉଟିକିଏ ଖାଇଦିଏ ପେଟଟା ଖାଙ୍କରା ଦିଶୁଛି । ତା' ପରେ ଆସିଲା ବିଶ୍ୱ ପିତୃ ଦିବସ ପାଳନ । ଖବର କାଗଜ ତଥ୍ୟ ହେଲା ପିତାଙ୍କୁ ବେଶୀ ଲୋକ ଭଲ ପାଉନାହାନ୍ତି । କାରଣ ପିତା ହିଁ ପିତା, ମିଠା ନୁହଁନ୍ତି । ପିତା ଲାଗୁଛି, ପିତା ଚାଖିବାକୁ କିଏ ଭଲ ପାଏ ? କ'ଣ ଡାଇବେଟିସ୍ ରୋଗୀ ହୋଇଛୁ ନା ପେଟରେ କୃମି ହୋଇଛି । ଦୂର- ଦୂର । ଏହାପରେ ଆସିଲା ସୁଯୋଗ, ମଣି କାଞ୍ଚନ ସଂଯୋଗ । ମାତୃ-ପିତୃ ଦିବସ ପାଳନ । ମାଆ ବସିଲେ ଖଟୁଲିରେ । ପିଲାଏ, ସିନ୍ଦୁର-ଚନ୍ଦନ-ଫୁଲ ଆଣି ପୂଜା ଆରମ୍ଭରେ ଲକ୍ଷ୍ମୀ ପଦ୍ମାଳୟା ପଦ୍ମା କମଳା ଶ୍ରୀ ହରିପ୍ରୀୟା-ଇନ୍ଦିରା ଲୋକ ମାତାମା କ୍ଷିରାବ୍ଧି ତନୟା ରମା । ମାଆ ମନ ଖୁସ୍ । ମୋ ପୁଅ, ସତରେ କପିଳ, ଏ ବିଶ୍ୱ ଯାହାର ଉଦରେ ମୁଁ ତାକୁ କେମନ୍ତେ ଜଠରେ । ଧାଇଁଲି ବୁଝି ନ ପାରଇ-କେବଳ ମାୟା ତୋ ଗୋସାଇଁ । ମହାମୁନି କପିଳଙ୍କୁ ପାଇଲା ଭଳି ଆନନ୍ଦରେ ପୁତ୍ରକୁ କୋଳକୁ ଟାଣି ଆଣି ଆଶୀର୍ବାଦ ଢାଳି ପକାଇଲେ । ମାଆଙ୍କ ପାଖରେ ପଡିଥିଲା ସାଜ ସଜାର ଚଉକି, ବସିଥିଲେ ପିତୃଦେବ । ଆରମ୍ଭ ହେଲା ପିତୃପୂଜା । ପିତା ଧର୍ମ, ପିତା ସ୍ୱର୍ଗ, ପିତା ହିଁ ପରମ ତପ-ପିତରି ପ୍ରିତିମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତା । ବୁଢାଟିଏ ହୋଇ ଥା । ପୁଅ ମାନଙ୍କର ପୂଜାପାଠ ପରେ, ବୋହୁ-ନାତି-ନାତୁଣୀ ଆସି ଓଢଣାଟାଣି ବୁ-ଢା ଦି ଚାରିଟା ମୁରୁକି ହସାମାରି ମୁଣ୍ଡିଆ ସବୁ ମାରି ଚାଲିଗଲେ । ବୁଢା-ବୁଢୀ ସମସ୍ତଙ୍କ ଗୁପ୍ତ ଚରିତ୍ର ପଞ୍ଜିକାରେ, ଚଳିତ ବର୍ଷ ପାଇଁ ନିଶ୍ଚୟ, ଉତ୍ତମ, ଲେଖିଥିବେ । ଆଛା ଯାହାଙ୍କର ପିତାମାତା ଜରାଶ୍ରମରେ ଆଶ୍ରୟ ନେଇଥିବେ ବା ଇସ୍କନ ମନ୍ଦିର କିମ୍ବା ଜଗନ୍ନାଥ ମନ୍ଦିରରେ ଗିନିମାରି, ହରେ କୃଷ୍ଣ ହରେ ରାମ...., ଆଲୋ ବୁଢୀ ହରେ କୃଷ୍ଣ ହରେ ରାମ କହ । ମଲା ମୁଁ କ'ଣ ଜାଣିନାହିଁ । ଶେଷ ଅକ୍ଷରଟା ଦିଟା ପରା ଆମ ବୁଢାର କିମିତି ଧରିବି ? ସେହି ପୁଅମାନଙ୍କର ଗୁପ୍ତ ଚରିତ୍ର ପଞ୍ଜିକାରେ କିଏ ଲେଖିବେ ? ପ୍ରସୂତି ଦିବସ, ସେବିକା ଦିବସ, ବିଶ୍ୱ ସ୍ୱାସ୍ଥ୍ୟ ଦିବସ, ଯୁବ ଦିବସ, ଶିକ୍ଷକ ଦିବସ ଇତ୍ୟାଦି ଇତ୍ୟାଦି ଏକ ବିରାଟ ତାଲିକା ଆଛି । ମୋର ତ ମନେ ନାହିଁ କିମ୍ବା ପୁରୁଣା କ୍ୟାଲେଣ୍ଡରରେ ମୁଣ୍ଡୁଳି ବୁଲାଇ ନାହିଁ । ସର୍ବ ଭାରତୀୟ ସେବା ଚାକିରୀ ପାଇଁ ପରୀକ୍ଷା

ଦେଉଥିବା ରତ୍ନମାନଙ୍କୁ ଯଦି ମୌଖିକ ପ୍ରଶ୍ନ କରାଯାଏ, କେହି ଜଣେ ହେଲେ ସଠିକ୍ ଉତ୍ତର ଦେଇପାରିବେ ନାହିଁ। କିମ୍ବା ତାଙ୍କ ପରୀକ୍ଷକ ମଧ ଦେଇ ପାରିବେ ନାହିଁ। ଆପଣ ଦେଇ ପରିବେ କି ? ବିଶ୍ୱସ୍ତରୀୟ, ଜାତୀୟ ସ୍ତରୀୟ, ରାଜ୍ୟ ସ୍ତରୀୟ, ଗ୍ରାମ୍ୟ ସ୍ତରୀୟ, ପରିବାର ସ୍ତରୀୟ ଘଟଣା ଅଛି ତାକୁ ପାଳନ କରାଯାଏ। ତା ସହିତ ମହାପୁରୁଷ ମାନଙ୍କର ଜନ୍ମଦିବସ ଓ ଶ୍ରାଦ୍ଧ ଦିବସ ମଧ ଅଛି। ଏବେ ଆସନ୍ତୁ ଦେଖିବା ମାତୃ ପିତୃ ଦିବସ ପାଳନ। ମାତୃ ପିତୃ ଦିବସ-ପାଳନ, ଏହାର ଅର୍ଥ କ'ଣ ? ଏମାନଙ୍କର ଜୀବିତାବସ୍ଥାରେ କିମ୍ବା ସ୍ୱର୍ଗାରୋହଣ ପରେ ? ଆଗରୁ କୁହାଯାଇଛି ମାତୃ ଦିବସ ପାଳନ ବା ମାଆଙ୍କୁ ଭଲ ପାଉଥିବା ପ୍ରଶଂସକଙ୍କ ସଂଖ୍ୟା ତୁଳନାରେ ପିତୃ ଦିବସ ପାଳନ ବା ପିତାଙ୍କୁ ଭଲପାଉଥିବା ପ୍ରଶଂସକ ସଂଖ୍ୟା କମ୍। କିନ୍ତୁ ଏକାବେଳକେ ଦୁଇଜଣଙ୍କୁ ପ୍ରଶଂସା କରୁଥିବା ଯଥେଷ୍ଟ କମ୍। କାରଣ ପିଲାଟି ଜନ୍ମ ପରଠାରୁ ଅର୍ଥାତ୍ ଅଜ୍ଞାନ ଅବସ୍ଥାରୁ ଜ୍ଞାନଲାଭ କରିବା ବୟସ ପର୍ଯ୍ୟନ୍ତ ମାଆ ପାଖରେ ବା ମାଆର ଯତ୍ନରେ ଯେତେଦିନ ଯେପରି ରହେ, ପିତାଙ୍କ ଠାରୁ ସେ ଧରଣର ପରିଚର୍ଯ୍ୟା ପାଇ ନଥାଏ। ଯେହେତୁ ମନୁଷ୍ୟ ସମାଜିକ ଜୀବ, ସେ ସର୍ବ ପ୍ରଥମେ ବୁଝେ ସମାଜ ହିଁ ନାରୀ ବା ମାଆଠାରୁ ସୃଷ୍ଟି। ପିତା ପରିବାରର ସମସ୍ତ ଦାୟୀତ୍ୱ ବହନ କରେ ସତ କିନ୍ତୁ ଶିଶୁର ଦୃଷ୍ଟିକୋଣରେ ନଗଣ୍ୟ। ତା'ର ଦୃଷ୍ଟିକୋଣ ଓ ବିଚାର ଶକ୍ତି ବଢି ବଢି ଯାଏ ସେତିକି ବେଳ ପର୍ଯ୍ୟନ୍ତ ଯେତିକି ବେଳେ ତା'ର ବେକରେ ଢୋଲିକିଟିଏ ପଡେ ଓ ବଜାଇ ଶିଖେ। ଅପର ପକ୍ଷରେ ଯେଉଁ ପିତା ଏ ପର୍ଯ୍ୟନ୍ତ ଦାୟୀତ୍ୱ ବହନ କରି ଯେପରି ବୁଢା ବଳଦକୁ ଚାଷୀ ପଚାରେ ନାହିଁ, ସେହିପରି କୁଟୁମ୍ବ ପୋଷଣରେ ଅସମର୍ଥ ଏହି ବ୍ୟକ୍ତିକୁ ତା'ର ସ୍ୱୀ ପୁତ୍ରାଦି ସ୍ୱଜନମାନେ ପୂର୍ବପରି ଆଦର କରନ୍ତି ନାହିଁ। ଏହାର କାରଣ କ'ଣ ? ଯେଉଁମାନଙ୍କୁ ଦିନେ ସେ ପୋଷୁଥିଲା। ସେମାନେ ତାକୁ ପୋଷନ୍ତି, କ୍ଷେତ୍ରକି ଶେଷରେ ଶୋଷନ୍ତି, ବାରମ୍ବାର ଚେଷ୍ଟାକରି ମଧ କୌଣସି ଜୀବିକାରେ ସଫଳ ନହେଲେ ଲୋଭବଶତଃ ପରଧନ ପ୍ରତି ଆକୃଷ୍ଟ ହୋଇପଡେ। ସ୍ୱଜୀବିକାରେ ନିଷ୍ଫଳ ଓ କୁଟୁମ୍ବ ପୋଷିବାରେ ଅସମର୍ଥ ସେହି ମନ୍ଦଭାଗ୍ୟ ବ୍ୟକ୍ତି ଅତି ଦିନହୀନ ଭାବରେ ସବୁବେଳେ ଚିନ୍ତାତୁର ହୋଇ ଦୀର୍ଘ ଶ୍ୱାସ ଛାଡୁଥାଏ। ଅର୍ଥାତ୍ ଯଦି କୌଣସି ପିତା ତା'ର ସମର୍ଥ ବୟସରେ ଯାହା କିଛି ପୁତ୍ର କନ୍ୟାଙ୍କୁ ସୁଖଶାନ୍ତିରେ, କରିବା ଆବଶ୍ୟକ କରିନାହାନ୍ତି, ଏ ପରମୁଖୀ ଦେଖି ଦୁନିଆରେ ସେ ପିତା କେବେ ହେଲେ ଗ୍ରହଣୀୟ ନୁହେଁ।

# ବିଶ୍ୱ ମାତୃ-ପିତୃ ଦିବସ ପାଳନ - ୨

ପିତା ଓ ମାତା, ପୁତ୍ରର ବିବାହ ପରେ ପୁତ୍ର ଓ ପୁତ୍ରବଧୂ ଠାରୁ କ'ଣ ପାଇବାକୁ ଆଶା ରଖନ୍ତି ? ତେଣୁ ସେଭଳି ପିତା, ପୁତ୍ର ଓ ପୁତ୍ରବଧୂଙ୍କ ଠାରୁ ଦୂରେଇ ଯାଆନ୍ତି ନା ତାଙ୍କୁ ଦୂରେଇ ଦିଆଯିବା ପଥ ପରିଷ୍କାର କରାଯାଏ ? ଯଦି କେହି ଭାଗ୍ୟବାନ ଗୋଟିଏ ଘରୁଆ ଘରର ଝିଅଟିଏ ବୋହୂ କରିବାକୁ ସୁବିଧା ପାଏ, ତାଙ୍କୁ ହିଁ ପୁନରାୟ ଥରେ ଭାଗ୍ୟବାନ ବୋଲି ଉଚାରଣ ମୁଁ କରେ । କଥାରେ ଅଛି ଗୋ-କନ୍ୟା-ଭୂମି, ଭାଗ୍ୟରେ ଥିଲେ ମିଳେ । ଏ ପର୍ଯ୍ୟନ୍ତ ନିଜର ପୁଅ କଥା କହିଲେ, କାରଣ କ'ଣ ? ପିତୃଦିବସ ପାଳନ ପାଇଁ କିଏ ଲାଳାୟୀତ । ଯଦି ପ୍ରଶ୍ନ ଉଠେ ବାପା ଆମ ପାଇଁ କ'ଣ କରିଛନ୍ତି କି ? କିମ୍ବା ପୁତ୍ରବଧୂଙ୍କର ପୁତ୍ରଙ୍କୁ ପ୍ରଶ୍ନ ହୁଏ ତମ ବାପା ତମ ପାଇଁ କ'ଣ କରିଛନ୍ତି କି ? କିମ୍ବା ସିଧାସଳଖ ତୀର ବେଗରେ ପ୍ରଶ୍ନ ଆସେ, ତମେ ପୁଅ ପାଇଁ କ'ଣ କରିଛ କି ? ଅତଏବ, ଆପଣ ଚିନ୍ତାକରି ପାରୁଛନ୍ତି ବାର୍ଦ୍ଧକ୍ୟଜନିତ ରୋଗଗ୍ରସ୍ତ ଅବସ୍ଥାରେ ଏମାନଙ୍କ ଠାରୁ ଏଭଳି ପ୍ରଶ୍ନ ପାଇ ଆପଣ କି ଉତ୍ତର ଦେବେ ? ଯାହା କର୍ତ୍ତବ୍ୟଜନିତ ରୋଜଗାର ତାହା କୁଟୁମ୍ବ ପୋଷଣ ଅର୍ଥାତ୍ ନିଜର ବୃଦ୍ଧପିତାମାତା-ପୁତ୍ର-କନ୍ୟା ଏବଂ ସେମାନଙ୍କ ପାଇଁ ଯେତିକି ଦରକାର । ବାଧହୋଇ ଗୁରୁତର ଲୋଭବଶତଃ ଯେଉଁ ଅର୍ଥ ଉପାର୍ଜନ କରେ, ତାହା ମଧ କୁଟୁମ୍ବ ପୋଷିବାରେ ଲାଗିଗଲା । କିନ୍ତୁ ନିଜ ପାଇଁ ନରକର ବାଟ ସୃଷ୍ଟିହୁଏ । ଯଦି ଲୋଭହୁଏ ଧନ ପ୍ରତି ଆକୃଷ୍ଟରେ ତେବେ କିଛି କରି ପାରିବେ, ତାହା କ'ଣ ? ଏତେ ଯେଉଁ କଥା ପୁତ୍ର ଓ ପୁତ୍ରବଧୂ ଚାହାନ୍ତି । ଯଦି ସନ୍ତୁଷ୍ଟ କରିଥାଆନ୍ତେ ତେବେ ନିଜର କୁଟୁମ୍ବ ପୋଷଣ କରିବା ପାଇଁ ଯେଉଁସବୁ ଅନ୍ୟାୟ କରି ଥାଆନ୍ତେ, ଦୈବ ବିହିତ ତା'ର କୁଫଳ ଅର୍ଥାତ୍ ନରକ ଭୋଗ କରି ଥାଆନ୍ତେ । ନ କରିପାରିଥିବାରୁ ବ୍ୟାକୁଳତା ଏବଂ କରିଥିଲେ ନରକ ଭୋଗ ପାଇଁ ବ୍ୟାକୁଳତା କ'ଣ କରିବେ ? କେବଳ ହତାଶା । ଆସନ୍ତୁ ଅନ୍ୟ ଗୋଟିଏ ଦିଗ ଦେଖିବା । ପୁତ୍ର ବିବାହର ପ୍ରଥମ ବର୍ଷ ବେଳେ ଜୁଲାଇ ମାସ ୪ର୍ଥ ରବିବାର ପଡିବା ହେତୁ ବିଶ୍ୱ ମାତୃ ପିତୃ ଦିବସ ପାଳନ ବଡ ଜାକଜମକରେ ପିତାମାତାଙ୍କୁ ଚୌକି-ଖଟୁଲିରେ ବସାଇ ଫୁଲ-ଚନ୍ଦନ-ଧୂପ-ଦୀପ ଦ୍ୱାରା ବନ୍ଦାଣ କରି ହୁଳୁହୁଳି ପକାଇ ଈଶ୍ୱରଙ୍କ ପାଖରେ ଦୀର୍ଘ ସୁଖମୟ ଜୀବନ ଯାପନ କରିବାକୁ ପରିବାର, ଭଗବାନଙ୍କ ନିକଟରେ ପିତାମାତାଙ୍କୁ ଆଶୀର୍ବାଦ କରିବାକୁ ପ୍ରାର୍ଥନା କଲେ । ଅର୍ଥାତ୍ ଭଗବାନଙ୍କୁ ବାରମ୍ବାର ଦୁଃଖ ଜଣାଇ ମଞ୍ଜୁର କରିଦେଲେ । ବାପା-ମାଆ ଖୁସ, ଆନନ୍ଦରେ ବିଭୋର । ହେଇଟି

ଦେଖୁଛ ପୁଅ କମେଇ ଥିଲେ ଭାଗ୍ୟରେ ଥିଲେ..... । ବୁଢ଼ା ପାକୁଆ ପାଟିରେ ପାନ ଚୋବାଉଛନ୍ତି, ଭାବୁଛନ୍ତି । ପ୍ରତ୍ୟେକ ବର୍ଷରେ ଥରେ ଜୁଲାଇମାସ ଆସେ ଓ ଚତୁର୍ଥ ରବିବାର ପଡେ, ତେବେ ସେଦିନ ଆମ ଦୁଇଜଣଙ୍କର ଚତୁର୍ଥୀ ମିଳନ ପଡିବ କି ? ଆନନ୍ଦ କେବଳ ଆମ ଦୁଇଜଣଙ୍କ ପାଇଁ ନା ବିଶ୍ୱପ୍ରେମରେ ଏ ଜଗତରେ ଜୀବିତ ବାର୍ଦ୍ଧକ୍ୟ ଜରାଗ୍ରସ୍ତ ପିତା-ମାତା ଏଭଳି ଆନନ୍ଦରେ ବିଭୋର ହେଉଥିବେ ? ସମୟ କହିବ । ଓଲଟ ପାଲଟ ଦୁନିଆ । ଆସିଯିବ ପରିବର୍ତ୍ତୀ ବର୍ଷର ଜୁଲାଇ ମାସର ଚତୁର୍ଥ ରବିବାର, କିପରି ପାଳନ କରାଯିବ ? ପୁତ୍ରବଧୂର ହାତମୁଠାରେ ପଡିସାରିଛନ୍ତି ପୁଅ । ପିତାମାତାଙ୍କ ପ୍ରତି ସାମାନ୍ୟରୁ ଅସାମାନ୍ୟ ଆଡକୁ ଗତି କରୁଛି ଅବହେଳା । ହଠାତ୍ ଏକ ପ୍ରଶ୍ନ ଆସିଛି । ଏ ବର୍ଷ ବିଶ୍ୱମାତୃ-ପିତୃ ଦିବସ ପାଳନ କରାଯିବ କେଉଁଠି ଓ କାହାଙ୍କୁ ? ତମ ମାତା-ପିତାଙ୍କୁ କିମ୍ବା ମୋ ପିତାମାତଙ୍କୁ ? ସ୍ତ୍ରୀ ଚାହେଁ ଯଥାର୍ଥ ଉତ୍ତର ନିଜ ସ୍ୱାମୀଙ୍କ ଠାରୁ ଏଠାରେ ଗୋଟିଏ ଯୁକ୍ତି ମୁଣ୍ଡ ଟେକୁଛି, ସ୍ତ୍ରୀଙ୍କ ବାରଣ ଓ ସ୍ୱାମୀଙ୍କ କାରଣ ଭିନ୍ନ ଭିନ୍ନ । ବୋହୁ ପାଇଁ ଶାଶୁ ଘର-ପୁଅପାଇଁ ଶ୍ୱଶୁର ଘର ଜନମତ । ବୋହୁର ଯେପରି ପିତା-ମାତା ବୋଲି ଭାବି ବିଶ୍ୱମାତୃ ଦିବସ ପାଳନ କରେ, ଠିକ୍ ସେହିଭଳି ପୁଅ ନିଜ ସ୍ତ୍ରୀର ପିତା-ମାତା ବୋଲି ଭାବି ବିଶ୍ୱ ମାତୃପିତୃ ଦିବସ ପାଳନ ନକରିବେ କାହିଁକି ? ଆପଣଙ୍କ ଉତ୍ତର କ'ଣ ସମ୍ବୋଧନ କରିବା ଠିକ୍ ହେବ । ପୁଅର ପିତାମାତାଙ୍କୁ ବୋହୁ କ'ଣ ଉଚ୍ଚାରଣ ବା ସମ୍ବୋଧନ କରିବା ଠିକ୍, ଠିକ୍ ସେହିଭଳି ବୋହୁର ପ୍ରକୃତ ବାପା-ମାଆଙ୍କୁ ଜ୍ୱାଇଁ ଉଚ୍ଚାରଣ ବା ସମ୍ବୋଧନ କିପରି କରିବା ଉଚିତ ହେବ । କାରଣ ପୁଅର ପିତା-ମାତା, ବୋହୁର ପ୍ରକୃତ ପିତା-ନୁହେଁ କି ପୁଅର ମାଆ ବୋହୁର ପ୍ରକୃତ ମାଆ ନୁହେଁ । ଏଠାରେ ସାମାଜିକ ସ୍ତରରେ ଯେଉଁ ଚଳଣୀ ଅଛି ତହିଁରେ ବାଧ ବାଧକତାର ରୂପରେଖ ଥାଏ । ଯେତେବେଳେ ପୁଅଟି ବୋହୁର ହାତ କଣ୍ଢେଇର ଖେଳନା ସାଜେ, ସେତେବେଳେ ପୁଅ ନିଜ ବାପର ନହୋଇ ଶ୍ୱଶୁରକୁ ବାପା ବୋଲି ଡାକିବାକୁ ବାଧ, ଶାଶୁଙ୍କୁ ବୋଉ ବା ମାଆ ବୋଲି ଡାକିବାକୁ ପଡିବ । ଫଳରେ ଗୁଣି ଗାରେଡି ମନ୍ତ୍ର ଫୁଙ୍କୁରେ ସେହିଦିନଠାରୁ ବିଶ୍ୱମାତୃ-ପିତୃ ଦିବସ ପାଳନ କେଉଁଠାରେ କରାଯିବ ? ଆଜିର ବୃଦ୍ଧ ପିତା-ମାତାଙ୍କ ଅବସ୍ଥାରୁ ଅନୁଧ୍ୟାନ ଓ ସଂଗ୍ରହ କରାଯାଇଛି । ଆଜି ସମୟ ବଦଳି ଯାଇଛି । ପଚାଶ ଷାଠିଏ ବର୍ଷ ତଳକୁ ଲକ୍ଷ୍ୟ କରନ୍ତୁ, ଆମ ସମାଜରେ ବର ତିରିଶ-କନିଆ ଦଶ । ବେଳେ ପିତାମାତାଙ୍କ ଅବସ୍ଥା ଏତେ ଖରାପ ନଥିଲା ଏବଂ ଏହାର ପରିବର୍ତ୍ତନ ହେବାର ଆବଶ୍ୟକତା ଥିଲା । ଝିଅର ବୟସ ଦଶରୁ ଉର୍ଦ୍ଧ୍ୱମୁଖୀ ହେଲା ବେଳକୁ ପୁଅର ବୟସ

ତିରିଶିରୁ ନିମ୍ନମୂଖୀ ହେଲା । ଶେଷରେ ପାଖପାଖି ବୟସରେ ବିବାହ କାର୍ଯ୍ୟ ହେଲା । ପୁଣି କିଛିଦିନ ତେରଛା ମାପ ହେଲା ବର୍ତ୍ତମାନ ଉଭୟଙ୍କର ଉର୍ଦ୍ଧ୍ୱମୁଖୀ ହୋଇ ବଢିଚାଲିଛି । ଆମ ଯୁଗକଥା କହିବା, ଧନୀ ଘରେ ଝିଅଦେବ, ଗରିବ ଘରୁ ଝିଅ ଆଣିବ । ଅଥାତ୍ ନିଜ ଅବସ୍ଥା ଠାରୁ ଉନ୍ନତତର ଆର୍ଥିକ ସ୍ୱଚ୍ଛଳ ଘରେ ଝିଅ ଦେଲେ ସେ ଶାଶୁ-ଶ୍ୱଶୁରଙ୍କ ଆଦେଶ ପାଳନ କରିବ । କାରଣ ନିଜ ବାପର ଅବସ୍ଥାକୁ ତୁଳନା କରି ଦୁଃଖରୁ ସୁଖକୁ ତୁଳନା କରି ଦୁଃଖରୁ ସୁଖକୁ ଯାଇଛି ବୋଲି ଚିନ୍ତା କରିବ ?

## ବିଶ୍ୱ ମାତୃ-ପିତୃ ଦିବସ ପାଳନ - ୩

ଗରିବ ଘରର ଝିଅଟି ମଧ ଠିକ୍ ସେହିକଥା ଚିନ୍ତା କରିବ । ସେ ତା'ର ଭାଗ୍ୟକୁ ନିନ୍ଦା ନକରି ପ୍ରଂଶସା କରିବ । ଏହାର ମଧ ପରିବର୍ତ୍ତନ ହେଲା ସତୁରୀ ଦଶକରେ ଯାହା ଘରକୁ ଯେତେ କଳାଧନ ଆସେ ସେହିଠାରେ ଝିଅ ଦିଅ । ଫଳରେ କଲେଜ ଅଧାପକ ବିଦ୍ୟାଳୟର ଶିକ୍ଷକଙ୍କୁ ଝିଅ ନଦେଇ ତହସିଲ ବ୍ଲକରେ କିରାଣୀ ଚାକିରୀ ବା ଓଭରସିଅରକୁ ଝିଅ ଦେବାକୁ ଲୋକ ଧାଡି ବାନ୍ଧିଲେ ଓ ଯୌତୁକର ନିଲାମ ବଢି ବଢି ଚାଲିଲା । ଷାଠିଏ ମସିହାରେ ଆରମ୍ଭ ହେଲା ସାଇକେଲ ତାପରେ ସାଇକେଲ ଓ ରେଡିଓ ତା'ପରେ ସାଇକେଲ ରେଡିଓ ଘଣ୍ଟା ଯୌତୁକ । ତା ପରେ ବାଟ ଖର୍ଚ୍ଚ ତା'ପରେ ଟିଭି ତା'ପରେ ମୋଟର ସାଇକେଲ, ତା'ପରେ ସମସ୍ତ ସହ ସୁନା । ବର୍ତ୍ତମାନ କାର । ଏହାପରେ ହେଲିକପ୍ଟର, ତା'ପରେ କ'ଣ ?

ବର୍ତ୍ତମାନ ପ୍ରଚଳିତ ଅବସ୍ଥାରେ ନ୍ୟାରିଅର ସହ କ୍ୟାରିଅର । ଯେତେବେଳେ ଏ ପ୍ରକାର ଦାବିସବୁ ଫସରଫାଟି ଯାଉଛି ଓ ଦିନକୁ ଦିନ ଅଚଳ ହୋଇ ଯାଉଛି, ଅନ୍ୟ ପନ୍ଥା, ଯେ ଯାହାକୁ କଳେବଳେ କଉଶଳେ ଧରିପାରେ । କିନ୍ତୁ ପିତା-ମାତା-ପରିବାର ଏଭଳି ପ୍ରସ୍ତାବରେ ଏକମତ ନୁହନ୍ତି । ଝିଅଟିର ଉପାୟ କ'ଣ ଓ ପୁଅଟିର ଉପାୟ କ'ଣ ? 'ଯାହାକୁ ଯିଏ ରସିଲା, କିଆଫୁଲ ପରି ବାସିଲା' ସେ ତାକୁ ଧରିଲା । ପିତା-ମାତା ଚାହୁଁଥିଲେ କ'ଣ ? ଏବଂ ପୁତ୍ର ଶିରୋମଣି କଲା କ'ଣ ? କିନ୍ତୁ ଝିଅର ପିତା-ମାତା ନୀରବ । କାରଣ ଦେଲାନାରୀ ହେଲା ପାରି । ପରେ ଆସିବେ ହୋଇ ହାତଧରାଧରି । ଏମାନେ କେତେ ବିଶ୍ୱମାତୃ-ପିତୃ ଦିବସ, ନିଜ ପିତା-ମାତାଙ୍କର ପାଳନ କରିବେ କି ? ଏସବୁ ଗଲା ନିମ୍ନବର୍ଗ ଓ ମଧମ ବର୍ଗ

ଲୋକମାନଙ୍କର କାହାଣୀ। ଆସନ୍ତୁ ଉଚ୍ଚ ବର୍ଗୀୟଙ୍କ କଥା ବିଚାର କରିବା।

ଏମାନେ ଦିନେ ଭାରି ଗରିବ ଥିଲେ। ପାଠ ପଢ଼ି ଚାକିରୀ କଲେ। କଳାଧନ କେଉଁ କେଉଁ ପଥଦେଇ ଆସେ, ଦୃଷ୍ଟି ନିକ୍ଷେପ କଲେ। କାଳକ୍ରମେ ଏତେ ଜମାହେଲା ଯେ, ଦିଆ ତ ଦିଆ ଛପର ଫାଡି ଦିଆ, ଭାଗ୍ୟବାନ। ଏମାନଙ୍କର ପରିବାର ସମସ୍ତଙ୍କୁ ନାକ ଟେକନ୍ତି। ତାଙ୍କର ପରକାର ସମାସ୍ୱନ୍ଦ ଯେତେବେଳେ ସମାନ-ସମାନ, ହାତ ଟେକିବ କିଏ, ଗୋଡ ଧୋଇଦେବ ସରକାରଙ୍କ ପିଅନ, ନଚେତ୍ ବାଥ୍ରୁମ୍‌କୁ ଯାଆନ୍ତୁ। ସେଥିପାଇଁ ବାରିକ ମାନେ ସଂଘବଦ୍ଧ ହୋଇ ୧୯୫୫ ମସିହାରେ ଷ୍ଟ୍ରାଇକ୍ କରିଥିଲେ। ଏମାନଙ୍କୁ କୁହା ଯାଉଥିଲା ବର୍ଣ୍ଣନୀୟା ବାରିକ। ଯାହାହେଉ ସେମାନେ ନିଜର କର୍ମ ଉପଚାର ବଦଳାଇ ଦେଇଛନ୍ତି। ତଥାପି ତାଙ୍କର ଆବଶ୍ୟକତା ଅଛି। ଏମାନଙ୍କ ପୁଅ ବୋହୂ କେଉଁ ଦେଶରେ ଅଛନ୍ତି, କେଜାଣି ? ଏମାନେ ଇଣ୍ଟର ନେଟ୍‌ରେ ପୂଜା ପାଆନ୍ତି। ଚୋର ମାଆ ମୁହଁ ଲୁଚାଇ ଲୁଚାଇ କାନ୍ଦେ।

ଶେଷରେ ବ୍ୟାସକବି ଫକୀର ମୋହନ ସେନାପତିଙ୍କ 'ଡାକମୁନସି' ଗଳ୍ପରେ ଗୋପାଳ ପୁତ୍ର ଓ ହରିସିଂ ପିତା ଚାକିରୀ ଗାଉଁଲି ପୋଷ୍ଟ ମାଷ୍ଟର କିନ୍ତୁ ବାପ ଥିଲା ଗାଉଁଲି ପୋଷ୍ଟ ଅଫିସର ଅର୍ଦ୍ଦଳି ପିଅନ। ଏତିକି ମାତ୍ର ତଫାତ ପୁଅ ପାଉଛି ୫ଟଙ୍କା କିନ୍ତୁ ବାପ ପାଉଥିଲା ୩ଟଙ୍କା। ବାପ ତିନିଟଙ୍କିଆ ହିସାବରେ ଯେତିକି କର୍ତ୍ତବ୍ୟ କରି ଯାହାଯାହା ପରିବାର ପାଇଁ କରିଥିଲା, ପୁଅପାଞ୍ଚଟଙ୍କିଆ ଓ ବୋହୂଟି କଥା ଅଜଣା। ଇଂରାଜୀ ଭୂସିଖାଇ ବିତାଡିତ। ଆଜିକାଲି ଅନେକ ଅନେକ ବୃଦ୍ଧ-ବୃଦ୍ଧା ନିଜର ପୁଅ-ବୋହୂଙ୍କ ଠାରୁ ଇଂରାଜୀ ଭୂସିପାଇ ଜରାଶ୍ରମ-ମଠ-ମନ୍ଦିର -ବିଦ୍ୟାଳୟ ପିଣ୍ଡା-ହୋଟେଲର ଦ୍ୱାରସ୍ଥ। ବାକି ରହିଲେ ଆମ ତମ ଭଳିଆ ବୁଢାବୃଦ୍ଧା। କ'ଣ ଟିକିଏ କାହାଣୀ କହିବି ? ସାଲବେଗ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଥିଲେ ଓ ନିଜକୁ କହୁଥିଲେ, ଧିକ ଯାଉ ଏ ଜୀବନ ଗରୁଡ ପଛରେ ରହି ନ କଲୁ ଦର୍ଶନ, ଧିକ...। ଆଶା କରିଥିଲି ମଲିକି, ମଲୀ ପୁଅ ନେଇ-ଦେବ କାହିଁକି। ଯେତିକି ପାରିଲୁ ପିଲାମାନଙ୍କ ପାଇଁ କଲୁ। ଗୋଲାମଗିରିରୁ ଯାହା ମିଳେ ହରଣ ଡିରିଶ ସମାନ ଯାହାହେଲା, ବଜାର ଦର ବଢ଼ିଯିବାରୁ ପାଞ୍ଚଦିନ ପାଇଁ ଖୋରାକି ସର୍ଟ। ଉଧାର-ଧାର କରିବାକୁ ହୁଏ। ବର୍ଷକୁ ବର୍ଷ ନିର୍ଦ୍ଧିଷ୍ଟ ଦରମା ଅନୁଯାୟୀ ପରିବାର ମଧ ବର୍ଦ୍ଧିତ ହେବାରେ ଉଣା କରିନାହୁଁ। ଅତଏବ ଅଭାବେ ସଭାବ ନଷ୍ଟ। ପିଲାଏ ପାଠ ପଢ଼ିଲେ, କେତେ ସୁସଙ୍ଗ ଓ କୁସଙ୍ଗକୁ ସାଥୀ କଲେ, ବୁଲିଲେ, ମଜାକଲେ ସମୟ ନଷ୍ଟ କଲେ, ବିବାହ ବୟସ ଆସିଲା, ସେଥିରେ ଉଣା କରାଗଲା ନାହିଁ। ଫଳ କ'ଣ ହେଲା ଜାଣନ୍ତି ? ପିତା

ମାତାଙ୍କର ସବୁ ଦୋଷ। ପୁତ୍ରଙ୍କର ମନ୍ତବ୍ୟ। ଏତେ ଏତେ ଲୋକ ଏତେ ଏତେ କଲେ ତମେ କାହିଁକି କରିପାରିଲ ନାହିଁ ? ଅମୁକ ଅମୁକ ଲୋକ ଅମୁକ ଅମୁକ ଚାକିରୀ କଲେ। ତମେ କାହିଁକି ଏକି ହୀନ ଚାକିରୀଟା କରୁଥିଲ ? ତମେ ଜଣେ ଅପଦାର୍ଥ ଅଯୋଗ୍ୟ ପିତା। ତାଙ୍କ ବାପା ତମ ଠାରୁ କମ୍ ପାଠ ପଢ଼ିଛନ୍ତି, କେତେବଡ଼ ଘର କରିଛନ୍ତି, କିନ୍ତୁ ତମେ ? ପୁତ୍ରବଧୂଙ୍କର ମନ୍ତବ୍ୟ, ଆମ ବାପାଙ୍କର ଦି'ଟା ଗାଡି, ତମେ ତମ ପୁଅ ପାଇଁ କ'ଣ କରିଛ ? ଜମି କରିଛ ନା-ବାଡି କରିଛ ? ନା-ଘର କରିଛ, ନା-ପୁଳାଏ ଥୋଇଛ ? ଉଭୟଙ୍କର ବୁଢୀ ଉପରେ ପଡିଲେ ନଜର ହେଲେ ବଜର ବଜର। କେବଳ ପିଲା କରି ଶିଖିଥିଲା, ପିଲାଙ୍କୁ ମଣିଷ କରି ଶିଖିନଥିଲା, ଦେଖ ଆମ ବାପ ମାଆଙ୍କୁ। ଗୋଟିଏ କି ଦିଟା ଜନମ କରିଦେଲେ କ'ଣ ଚଳି ନଥାନ୍ତା ? ଦି ଜଣ ଏଠି ବସି ଟୁପର-ଟାପୁର ହେଉଛନ୍ତି। ତମରି ବୟସର ବୁଢାବୁଢୀ ମୂଲ ଲାଗୁଛନ୍ତି, ଟଙ୍କା ଆଣି ପୁଅ ବୋହୁଙ୍କୁ ଦେଉଛନ୍ତି। କାଲିଠାରୁ ସକାଳୁ...... । ଏଭଳି ତୀବ୍ର ତାଡନା ମଧ ଶସ୍ତା ଦରରେ ମିଳୁଛି। ଏମାନେ କାହାର ? ଏମାନଙ୍କର ଭବିଷ୍ୟତ କ'ଣ ? ବାପା ! ଯାହା କହିଛୁ-ଯାହା କରିଛୁ ଭୁଲିଯିବ। ଆଉ ଯାହା ବାକି ଉଣା ରହିଲା, କାନ୍ଧରେ ବୋହିନେବୁ-ପୋଡିବା ପାଇଁ କାଠ-ବାଉଁଶ-ପୁରୋହିତ ଖର୍ଚ୍ଚ ଏବଂ ଶୁଦ୍ଧି ପର୍ଯ୍ୟନ୍ତ ତେଲ-ଲୁଣ-ହଳଦୀ-ଖଟା ଇତ୍ୟାଦି ତ୍ୟାଗ କରି ଏକବେଳା ଖାଇବୁ। ଦଶଦିନ ଲଣ୍ଡାହେବୁ, ଏକାଦଶ ଦିନ ବ୍ରାହ୍ମଣଙ୍କୁ ଭୋଜନ ଦେଇ ତାଙ୍କ ଗୋଡତଳେ ପଡି କ୍ଷମାଭିକ୍ଷା କରି କହିବୁ, ଏଠାକାର ଯେତେପାପ ବାପା କରିଥିବେ, ସେଥିରୁ ତାଙ୍କୁ ମୁକ୍ତିଦେବେ। ଏବେ ଆମେ ପିତୃଋଣରୁ ସମ୍ପୂର୍ଣ୍ଣ ମୁକ୍ତ। ପରେ ମାଆଙ୍କ ପ୍ରତି ସେହି ପ୍ରଥା ଲାଗୁହେବ।

**ଆସନ୍ତୁ ବିଶ୍ୱ, ମାତୃ-ପିତୃ ଦିବସ ପାଳନ କରିବା।**

## ମାଇଁ ! ମୋର ଦୋଷ ନାହିଁ - ୧

ମଞ୍ଚାରୁ ପଡି ମାମୁଁ ମଲେ। ମାମୁଁଙ୍କ ଧନୁଯାତ୍ରାରେ ଉପସ୍ଥିତ ସମସ୍ତ ଦର୍ଶକଗଣ ହେଉଛନ୍ତି ସାକ୍ଷୀ। ମହାରାଜ କଂସଙ୍କର କେତେ ରାଣୀଥିଲେ ତାହାର ପ୍ରମାଣ ଜଗନ୍ନାଥ ଦାସ ସୁଚନା ପ୍ରଦାନ କରିନାହାନ୍ତି। କିନ୍ତୁ ପୁରାଣ ଯୁଗର ରାଜାମହାରାଜାଗଣ ଏକାଧିକ ଠାରୁ ଆରମ୍ଭ କରି ଶତାଧିକ ପର୍ଯ୍ୟନ୍ତ ସୁନ୍ଦରୀ ମାନଙ୍କୁ ରାଣୀର ମାନ୍ୟତା ପ୍ରଦାନ କରିଥିଲେ। ଏହି ହିସାବରେ ଜଗନ୍ନାଥ ସଂସ୍କୃତ ଅନୁଯାୟୀ

ସ୍ୱାମୀଙ୍କ ବିଛେଦରେ ସ୍ତ୍ରୀ ବା ରାଣୀମାନେ କ୍ରନ୍ଦନ କରିବାଟା ସ୍ୱାଭାବିକ। ଯେହେତୁ ବୈଧବ୍ୟ ଯନ୍ତ୍ରଣା ଅସହ୍ୟ କଷ୍ଟ ଦିଏ ତେଣୁ ଯେହେତୁ କ୍ଷୁଦ୍ର ବାଳକ ଦ୍ୱୟଙ୍କ ଦ୍ୱାରା ମହାବଳୀ କଂସଙ୍କର ମୃତ୍ୟୁ ସମ୍ଭବ ହୋଇଥିବାରୁ, ମାଇଁଗଣ ନିଶ୍ଚୟ ଦୁଃଖରେ ମ୍ରିୟମାଣ ହୋଇ କୃଷ୍ଣ-ବଳରାମଙ୍କୁ ସାଧାରଣ ଗାଉଁଲିଆଣୀଙ୍କ ଅଶ୍ରାବୀ ଗାଳି ବର୍ଷଣୀ ଶୁଣି ମାଇଁ ମାନଙ୍କ ନିକଟର ଦୁଇଭାଇ ଯାଇ ସାନ୍ତ୍ୱନା ପ୍ରଦାନ ଛଳରେ ଭାଗବତ ବାଣୀ କହେ "ତୁମ୍ଭେ ଗୋ ଅର୍ଜିଅଛ ଯାହା-ଅବଶ୍ୟ ଭୁଞ୍ଜିବଟି ତାହା" ତେଣୁ ବୈଧବ୍ୟ ଯନ୍ତ୍ରଣା ଭୋଗାଭୋଗ ମାଇଁମାନଙ୍କର କପାଳ ଲିଖନ ଥିଲା ତାହାଘଟିଲା ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବ୍ୟ। ତେଣୁ ଦୁଃଖ କରିବା ଅନାବଶ୍ୟକ।

ଯାହାହେଉ ମାଇଁମାନଙ୍କର ମନକୁ ପରିବର୍ତ୍ତନ କରିଛନ୍ତି କାରଣ ଶ୍ରୀକୃଷ୍ଣଙ୍କର ମୁଖମଣ୍ଡଳ ଦର୍ଶନରେ ଗୋଟିଏ ସୁନ୍ଦର ଅତିଆଶ୍ଚର୍ଯ୍ୟ ଜନକ ମୋହିନୀ ଶକ୍ତି ନିବେଦିତ ତେଣୁ କଂସ ରାଜାଙ୍କର ବିୟୋଗାତ୍ମକ ବିଛେଦାତ୍ମକ ଦୁଃଖରୁ ମାଇଁଗଣ ମୁକ୍ତ "ମାୟା ସଂସାରେ ଏହିମତେ-ଜନ୍ମ ମରଣ ବେନିପଥେ।' ଯେପରି ପଥଗଣ ପଥିକଗଣ ବ୍ରୁନ୍ଦୁପଥଗମନ ପରେ ବୃକ୍ଷଛାୟାରେ କିଛି ସମୟ ପାଇଁ ମେଳି ହୋଇ ସଂପର୍କ ସ୍ଥାପନ କରେ ପୁଣି ବିଛେଦରେ ଅନ୍ୟ ପଥିକମାନଙ୍କ ସାମୟିକ ସୁସଂପର୍କ କଥା ଚିନ୍ତାକରେ ଏବଂ ନିରବ ରହେ ସେହିଭଳି ମାମୁଁ ରାଜାଙ୍କ ଶ୍ୱସୁରଙ୍କ ସହିତ ମାଇଁ ମାନଙ୍କର ନିବିଡ଼ତା ବନ୍ଧନ ହେତୁ କ୍ଷଣପାଇଁ ଦୁଃଖ ଦେବାଟା ସ୍ୱଭାବିକ ଘଟଣା।

ପକ୍ଷାନ୍ତରେ ମାମୁଙ୍କର ମୃତ୍ୟୁ କାରଣ ପାଇଁ ମାମୁ ମହାରାଜଙ୍କ ବିଜେ ଦାୟୀ। ମାମୁଁ ଘରେ ଭଣଜା ଶ୍ରେଷ୍ଠ କୁଣିଆ। ମାମୁଁ କେବେ ଭଣଜାର ଅନିଷ୍ଟସାଧନ କରିବାର ମନୋବୃତ୍ତି ଧରେ ନାହିଁ। କିନ୍ତୁ ଏ କ୍ଷେତ୍ରରେ ବ୍ୟତିକ୍ରମ ପରିଲକ୍ଷିତ ହୁଏ। ଏହି ଏକ ସମାଜ ବିରୋଧି କାର୍ଯ୍ୟ ବୋଲି ଚିନ୍ତାକରାଯାଏ। ଭଣଜା ଦ୍ୱୟ ମାମୁଁଙ୍କ ଦ୍ୱାରା ନିମନ୍ତ୍ରିତ। ଭଣଜାଙ୍କ ପାଇଁ ମାମୁଁଘର ନିଷ୍କଣ୍ଟକ କ୍ଷେତ୍ର। ସାଧରଣତଃ ଦେଖାଯାଏ, ଅନେକ ଅନେକ ଙ୍କର ମାତାପିତା ପ୍ରାପ୍ତ ବୟସ ପୂର୍ବରୁ ମୃତ୍ୟୁ ହେତୁ ସମାଜରେ ଉପଯୁକ୍ତ ମନୁଷ୍ୟ ହୋଇ ବଞ୍ଚିଛନ୍ତି କେବଳ ମାମୁଁଘର ପିୟୁସୀଘର-ମାଉସୀଘର ଦ୍ୱାରା। ଏଭଳି କର୍ତ୍ତବ୍ୟ କେବଳ ଆମ ଦେଶରେ ନୁହେଁ ପୃଥିବୀର ସବୁଦେଶରେ ଦେଖାଯାଏ। କିନ୍ତୁ କଂସ ରାଜାଙ୍କର ଚିନ୍ତାଧାରା ଏହାର ବ୍ୟତିକ୍ରମ ନୀଚ ସଂସ୍କୃତି ସମ୍ପନ୍ନ ପରିବାରରେ ଆଶାକରାଯାଏ ନାହିଁ ବା ଭଣଜା ଦ୍ୱାରା ମାମୁଁ ନିହତ ଶୁଣିବାକୁ ମିଳେ କିନ୍ତୁ ମାମୁଁଙ୍କଦ୍ୱାରା ଭଣଜାର ହତ୍ୟା ନାସ୍ତି।

# ମାଇଁ ! ମୋର ଦୋଷ ନାହିଁ - ୨

ଏହା ଏକ ବିରଳତମ ଘଟଣା ହେତୁ ସର୍ବଶ୍ରେଷ୍ଠ ପୁରାଣରେ ସ୍ଥାନ ପାଇଛି । ତେବେ କଂସରାଜ ଚରିତ୍ର ବିଷୟରେ ଆଲୋଚନା କରାଯିବାଟା ଠିକ୍ ହେବ । ପୂର୍ବରୁ କଂସ ନିଜେ କହିଛନ୍ତି, ଶିଶୁ-ନାରୀ-ଗୋରୁ-ବ୍ରାହ୍ମଣ-ପିତା-ମାତା ଏମାନଙ୍କୁ ହତ୍ୟା କଲେ ନର୍କରେ ପଡିବାକୁ ହୁଏ । ଏକଥା ଜାଣି ତାଙ୍କର ନିଷ୍ଠୁର ଚରିତ୍ର ସେହି ସେହି କୁକର୍ମ କରିବାରେ କେବଳ ଉପସ୍ଥିତ ଜନ୍ମ ପାଇଁ ନୁହେଁ ଅତୀତ ଜନ୍ମର ସଂଚିତ ପାପର ଫଳ ଭୋଗ କରିବାକୁ ହେବ ଜନ୍ମ ପୂର୍ବରୁ ପିତା ମାତାଙ୍କ ବନ୍ଦିଶାଳାରେ ଯେତେ ନିର୍ଯାତନା ଦେଲେ ପୁଣି ଜନ୍ମିତ ଶିଶୁମାନଙ୍କୁ ହତ୍ୟା କଲେ । ନିମନ୍ତ୍ରଣ ରକ୍ଷା କରି ମଧ ମାମୁଁଙ୍କ ଚେତନା ହଜିଗଲା ।

ପିତାମାତା ନନ୍ଦ ଓ ଯଶୋଦା-ବସୁଦେବ ଏବଂ ଦେବୀଙ୍କୁ ହତ୍ୟା କରିବାକୁ ନିର୍ଦ୍ଦେଶ ଦେଲେ । ପିତା ଉଗ୍ରସେନଙ୍କୁ ଶୂଳୀରେ ବସାଇବାକୁ ଥିଲା । ତାଙ୍କର ନିର୍ଦ୍ଦେଶ । କୁବଳୟା ହସ୍ତୀର ଆକ୍ରମଣ -ଶ୍ରେଷ୍ଠ ମାଲ ଚାଣୁର ସହିତ ମୁଷ୍ଟିଯୁଦ୍ଧ-ମୁଷ୍ଟିକମାଳର ଆକ୍ରମଣ ଯାତ୍ରାସ୍ଥଳୀ ପର୍ଯ୍ୟନ୍ତ ଗନ୍ତବ୍ୟମାର୍ଗରେ ଯେତେଯେତେ ସୈନ୍ୟସାମନ୍ତ ନିୟୋଜିତ ଥିଲେ ସମସ୍ତ କ୍ଷେତ୍ର ଅତିକ୍ରମ କରି ମାମୁଁ ନିଷ୍ଠୁର, ନିର୍ଦ୍ଦୟ ହେଲେ । "ପାଦେ ପଡିଲି ମୁହିଁ ଯାଇ ଧାଇଁଲେ ଖଡଗ ଉଞ୍ଚାଇ" । ଉତ୍କଳୀୟ ସଭ୍ୟତା କହେ ପିତା-ମାତା ଗୁରୁଜନ ମାନଙ୍କ ପାଦସ୍ପର୍ଶ କରି ପ୍ରଣାମ କରିବା ବିଧି ଅତଏବ କୃଷ୍ଣ ବଳରାମ ନିଜର ନୈତିକ ବ୍ୟବହାର ପ୍ରଦର୍ଶନ ବେଳେ ମାମୁଁ ହତ୍ୟା କରିବାକୁ ଖଡ଼୍ଗ ଧାରଣ କରିଛନ୍ତି । କାରଣ ସେ ନିଜର ମୃତ୍ୟୁକଥା ଯଥେଷ୍ଟ ପୂର୍ବରୁ ଶୁଣି ଉଭୟ ହୋଇଥିଲେ । ତାହାଥିଲା ଶୂନ୍ୟବାଣୀ, "ରେ ରେ ଅସୁର କଂସ ଶୁଣ-ନ ଜାଣୁ ଆପଣା ମରଣ । ଯେ ରଥ ବାହୁଡା ଉସତେ ତୋତେ ମାରିବେ ତାର ସୁତେ । ଅଷ୍ଟମ ଗର୍ଭେ ଅବତରି-ମହୀ ରଖିବେ ତୋତେ ମାରି ।" ଏହା ସାଧାରଣ କଥା ବଞ୍ଚିବା ପାଇଁ ଶତ୍ରୁକୁ ହତ୍ୟା କରାଯାଏ । ଯେ ଅଟେ ଆମର ବଇରୀ ଗୁରୁ ବ୍ରାହ୍ମଣ ହେଲେ ମାରି ତେବେ କଂସ କିଛି ଭୁଲ କରି ନଥିଲେ କିନ୍ତୁ ସେହି ଦୁଇଟି ପିଲାଥିଲେ । ମାରିବାହିଁ ଅନ୍ୟାୟ ।

ଉପରେ ମାମୁଁର ପାଦତଳେ ଆଶ୍ରୟ ନେବା ସମୟରେ ନିଷ୍ଠୁର ମାମୁଁ ମୁଣ୍ଡବାଳଧରି ତଳକୁ ଫୋପାଡି ଦେଲେ । ମୃତ୍ୟୁ ମୁଖରୁ ରକ୍ଷା ପାଇବା ପାଇଁ ମାମୁଙ୍କ ପାଦକୁ ଧରିପକାଇବା ଦ୍ୱାରା ମାମୁଁ ଏତେ ବଡ ଏବଂ ଏତେ ଶକ୍ତିଶାଳୀ ମଞ୍ଚାଉପରୁ ତଳେ ପଡିଗଲେ ଅଥାତ୍ କୃଷ୍ଣ ବଳରାମ ବଞ୍ଚିଲେ ସିନା କିନ୍ତୁ ମାମୁଁ ? ତେଣୁ ମାଇଁଲେ, ମଞ୍ଚାରୁ ପଡି ମାମୁଁମଲା ମୋତେ ଗୋ ଦଇବ ରଖିଲା" ।

ମାଇଁମାନେ ସଂପୂର୍ଣ୍ଣ ବୁଝିଗଲେ । ପ୍ରକୃତରେ କଂସ ମହାରାଜ ମଞ୍ଚାରୁ ପଡି ପ୍ରାଣତ୍ୟାଗ କଲେ । ପରବର୍ତ୍ତୀ କାର୍ଯ୍ୟକ୍ରମ କଂସଙ୍କୁ ରାଜକୀୟ ଢାଞ୍ଚାରେ ଅଗ୍ନି ସଂଯୋଗ କଲେ । ପରେ ଅଷ୍ଟମଲ୍ଲଙ୍କୁ ଅଗ୍ନି ଦେଲେ । ଏଠାରେ ପୁରାଣ କହେ, ମୃତ ପିତା-ମାତା ଯଦି ଅପୁତ୍ରିକ ହୋଇଥାନ୍ତି । ଭଉଣୀର ପୁତ୍ର ଭଣଜା ମୁଖାଗ୍ନି ଦେବାକୁ ହକ୍‌ଦାର । କାରଣ ସଂପତ୍ତିଗତ ଅଧିକାରୀ ହେବେ ଭଣଜା । ତେଣୁ ମଥୁରାଗଡର ରାଜା ସିଂହାସନର ଅଧିକାରୀ ହେଲେ ଭଗବାନ ଶ୍ରୀକୃଷ୍ଣ । ଆଉ ଗୋପପୁରକୁ ପ୍ରତ୍ୟାବର୍ତ୍ତନ କରିନାହାନ୍ତି ।

## ପିତାମାତା ପ୍ରତି ପୁତ୍ରର କର୍ତ୍ତବ୍ୟ

ଅଗ୍ନିକଣୀକା-ସର୍ପ-ସନ୍ନ-ରାଜପୁତ୍ର ଏମାନଙ୍କୁ ଛୋଟ ବୋଲି ଭାବନା ଠିକ୍ ନୁହେଁ । ସାଧରଣ କ୍ଷୁଦ୍ର ଅଗ୍ନିକଣିକା ବିରାଟ ଅଗ୍ନିପିଣ୍ଡୁଳା ପରିଣତ ହୋଇପାରେ-ସର୍ପ କ୍ଷୁଦ୍ର ହେଲେ ମଧା ବିଷ ଉତ୍କଟତର ରାଜପୁତ୍ର ଛୋଟ ହେଲେ ମଧ ରାଜସିଂହାସନ ଓ ରାଜଦଣ୍ଡର ଅଧିକାରୀ । ସେତେବେଳେ ରାଜତନ୍ତ୍ରର ଶାସନ ଥିଲା ଏବଂ ଗଣତନ୍ତ୍ର ନ ଥିଲା ବୋଲି ପୁରାଣ ପ୍ରମାଣ ଦିଏ । କିନ୍ତୁ କଂସରାଜ ତାଙ୍କ ପିତା ଉଗ୍ରସେନଙ୍କୁ ବିତାଡିତ କରିଥିବାରୁ ପୁନରାୟ ସିଂହାସନ ଅଧିକାରୀ ହେଲେ "ଉଗ୍ରସେନଙ୍କୁ ଅଣାଇଲେ-ରାଜା ଆସନେ ବସାଇଲେ" । ଏଠାରେ ଭଗବାନ ମାୟା ହେତୁ ଧନୁଯାତ୍ରାରେ ଯୋଗଦେଇଥିବା ସମସ୍ତ ଦର୍ଶକ ଓ ରାଜନ୍ୟବର୍ଗ କୃଷ୍ଣ ବଳରାମଙ୍କୁ ଚର୍ମଚକ୍ଷୁ କ୍ଷୁଦ୍ରବାଳକ ହିସାବରେ ଦୃଶ୍ୟମାନ ହେଉଥିବା ସମୟରେ କିନ୍ତୁ ମହାରାଜ କଂସଙ୍କ ଶେଷ ମୁହୂର୍ତ୍ତରେ ସେ ଦେଖିବାକୁ ପାଇଥିଲେ ବିଶ୍ୱରୂପ । ଗତଜନ୍ମର ଅଭିଶାପରୁ ମୁକ୍ତି ପାଇଲେ ।

ପୁନରାୟ ମାୟା ରଚନା କଲେ ଏବଂ ମାତା ପିତାଙ୍କ ସହ ମିଳିତ ହୋଇ ଦୁଃଖ ପ୍ରକାଶ କଲେ । ପିତାମାତାଙ୍କ ଉପକାର ଯଥା-ଜନ୍ମଠାରୁ ଯୌବନ ପର୍ଯ୍ୟନ୍ତ ପିତାମାତାଙ୍କ ଲାଳନ ପାଳନର କିଛି ସୀମା ନ ଥାଏ । ସ୍ନେହ ମମତା ପିତାମାତା କର୍ତ୍ତବ୍ୟ କର୍ମ ଦ୍ୱାରା ଶିଶୁ ଠାରୁ କର୍ମ ସଂସ୍ଥାନ ପର୍ଯ୍ୟନ୍ତ ପିତାମାତାଙ୍କ ଦାୟୀତ୍ୱ ଏହା ପୁତ୍ରପାଇଁ ଋଣସଦୃଶ । କଥାରେ ଅଛି ପିତାମାତାଙ୍କ ଋଣ କେହି ଶୁଝିପାରିନ ଥାନ୍ତି । ଋଣ ବାର ପ୍ରକାର ଯଥା ସ୍ୱରଣ-ମାତୃଋଣ-ସ୍ୱୀଋଣ-ନିଦୟୀଋଣ-ପିତୃଋଣ-ଦୈବୀଋଣ-ସମ୍ବନ୍ଧିଋଣ-କନ୍ୟାଋଣ-ଭଗ୍ନୀଋଣ-ଅଜନ୍ମାଋଣ-ଈଶ୍ୱରୀୟଋଣ । କିନ୍ତୁ ଏଠାରେ କେବଳ ପିତୃଋଣ ଓ ମାତୃଋଣ ଦୁଇଟିକୁ ଆଲୋଚନା କରାଯାଇଛି ।

"ପିତା ଜନନୀ ଉପକାର ଶୁଝିପାରିବ କେକୁମର ଗର୍ଭେ ବହନ୍ତି ଦୁଃଖ ସହି-

ପୁଣି ପାଳନ୍ତି କ୍ଷୀର ଦେଇ। ସର୍ବ ସଂପଦ ପୁଣ୍ୟ ଦେଇ-ତାହାର ପୋଷଣେ ବଞ୍ଚଇ । ପ୍ରତି ଉପକାରେ ଶତବରଷ କେହୁପାରେ” ମାତା ଗର୍ଭଧାରଣ କରେ କଷ୍ଟସହେ କ୍ଷୀର ଦିଏ ଏବଂ ଜୀବନ ରକ୍ଷା କରେ। ପୁନରାୟ ଗଚ୍ଛିତ ଧନ ଅର୍ଥାତ୍ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ଦାନ କରେ ଏବେ ମୃତ୍ୟୁପରେ ବଂଶଧର ଉତ୍ତରାଧିକାରୀ ବା ପୈତୃକ ସଂପତ୍ତିର ଅଧିକାରୀ ହୁଏ। ତେଣୁ କେହି ଶତ ଶତ ବର୍ଷରେ ପିତୃମାତୃ ଋଣ ଶୁଝି ପାରେ କି ? କିନ୍ତୁ ବର୍ତ୍ତମାନ ସମୟରେ ଯେଉଁ ବୃଦ୍ଧ-ବୃଦ୍ଧା ଜରାଶ୍ରମରେ ରହି ଜୀବନ ଅତିବାହିତ କରନ୍ତି, ସେମାନଙ୍କଠାରୁ ଜନ୍ମିତ ସନ୍ତାନ ସଂପୂର୍ଣ୍ଣ ଋଣମୁକ୍ତହେବା ପରେ ପୁନରାୟ ଋଣୀ ନ ହେବାପାଇଁ ବିଦାୟ ଦିଅନ୍ତି। ଯଥା- ବୁଢାହଡା ବଳଦ। ଗୋଟିଏ ଗୁଆ ଖଣ୍ଡିଏ ହଳଦୀ ବେରାଇ ଦୁବ ଘାସଦେଇ ମାଲିକ ବେକରୁ ପଘା ଫିଟାଇଦେଇ ଜୁହାର ହୋଇ କହେ, ଦୀର୍ଘଦିନ ହେବ ପରିଶ୍ରମ କରି ଥକି ପଡିଲୁଣି ଏବେ ଗୋଶାଳାରେ ବିଶ୍ରାମ ନେବୁ ଯାଆ। ପୁନରାୟ ଭଗବାନ କହନ୍ତି, “ଯେ ପିତାମାତା ନ ସେବନ୍ତି-ଅନ୍ୟାୟ କର୍ମ ଆଚରନ୍ତି  ଜୀବନର ଅନ୍ତେ- ବେଗେ ମିଳନ୍ତି ଯମଦୂତେ। କର ଚରଣ ବାନ୍ଧି କୋପେ -ଘେନାଇ ଯାନ୍ତି ପରଲୋକେ। ବାର୍ଦ୍ଧକ୍ୟ ସମୟ ଉପସ୍ଥିତ ହେଲେହେଁ ଏତ ହେଉଛି ପ୍ରକୃତିର ନିୟମ, ଜରାଗ୍ରସ୍ତ ଅବସ୍ଥାରେ ଏବଂ ମଣିଷ ମୃତ୍ୟୁର ସନ୍ନିକଟ ସମୟର ସାହାଯ୍ୟ ଲୋଡେ। ସେଥିପାଇଁ ସଂସାରୀ ହୁଏ ଏବଂ ବଂଶରକ୍ଷା ପାଇଁ କ୍ରିୟତେ ଭାର୍ଯ୍ୟା ଏହାତ ଧାରାବାହିକ ସୃଷ୍ଟିର ନିୟମ କିନ୍ତୁ ବ୍ୟତିକ୍ରମରେ ଉଧାରକୁ ବଦଳ ହିସାବରେ ନିଜର ସୃଷ୍ଟଠାରୁ ଦଣ୍ଡିତ ହୁଏ। ଯେ ନିଜର ପିତାମାତାଙ୍କୁ ବାର୍ଦ୍ଧକ୍ୟରେ ସାହାଯ୍ୟ କରେ ନାହିଁ ସେହିଭଳି ଯେମିତି ବୁଣିବ ସେମିତ ପାଇବ ନୀତି ହିଁ ସତ୍ୟ।

ନିଗାମ ପଥେ ଯେବେ ତଳେ ବନ୍ଦଇ ଯୁଧାର ବିକଳେ କଥା କହନ୍ତି। ଚିତ୍ରସହ ପ୍ରଦର୍ଶନ କରନ୍ତି। ସେମାନଙ୍କର ଦୁଃଖର କାହାଣୀର ବିସ୍ତୃତ ବିବରଣୀର ଲେଖନ୍ତି ତେବେ ଯେଉଁ ପୁତ୍ର ବା ପୁତ୍ରବଧୂ ବୃଦ୍ଧକୁ ମୁଥାଏ ଅନ୍ନ ନ ନେଇ ନିଷ୍ଠୁରଣେ ପ୍ରକବା କଲେ, ସେମାନଙ୍କ ପାଇଁ ଭାଗବତ ଭବିଷ୍ୟତ କଥା ଜଣାଏ। ଖାଲି ସେତିକି କହି ନଥାନ୍ତି। ଯମଦୂତଗଣ ସ୍ମରଣ କରାଇ ଦେଇ କହନ୍ତି, “ପିତାମାତାଙ୍କୁ ଦୁଃଖ ଦେଇ ଜୀବନ ପୋଷୁ ଥିଲୁ ତୁହି।” ନିଜେ ନିଜପାଇଁ , ନିଜ ସ୍ତ୍ରୀ ପାଇଁ, ନିଜର ପିଲାଛୁଆଙ୍କ ପାଇଁ କର୍ତ୍ତବ୍ୟ କରିଥିଲେ ମଧ ବୃଦ୍ଧପିତାମାତାଙ୍କୁ ଅବହେଳା କରିଥିବାରୁ ଏହିସବୁ ଭୋଗ ହେଲା। ଯାହା ଗତଜନ୍ମର ପୂଣ୍ୟ ସଞ୍ଚିତ ଥିଲା, ତାହାର ଶେଷ ପରେ, ଏହି  ପାପଫଳ ଭୋଗାଭୋଗ ହେବ। ସେଥିପାଇଁ  କ୍ଷୁଧାରୁ ରକ୍ଷା

ସେଥିପାଇଁ କ୍ଷୁଧାରୁ ରକ୍ଷା ପାଇବାପାଇଁ ତୋ ପାଇଁ ଖାଦ୍ୟ, "ଏବେ ଖାଇବୁ ଆଉ ବିର ଏମନ୍ତେ ଦ୍ୟନ୍ତି ତାର ମାଂସ । କାଟି ତାହାର ମୁଖେ ଦିଅନ୍ତି-ନିର୍ଦ୍ଦୟେ ଯଷ୍ଟି ପ୍ରହାରନ୍ତି" । ବହୁତ ସମୟରେ ବୃଦ୍ଧ ପିତାମାତାଙ୍କ ପୁତ୍ର ଏବଂ ବଧୂ ଶାରୀରିକ ଯନ୍ତ୍ରଣା ଦେଇଥାନ୍ତି । ଏହି କଥା ନିଜର ପରିବାରରେ ହେଉ ପଡିପକ୍ଷ ଘରେ ହେଉ ଅବା ସାହିରେ ହେଉ କିମ୍ବା ଗ୍ରାମରେ ହେଉ ନିଶ୍ଚିତ । ଯେଉଁମାନେ B P L ଧାରି ବା ବାର୍ଦ୍ଧକ୍ୟଭତ୍ତା ପାଉଛନ୍ତି, ସେମାନଙ୍କୁ ପ୍ରଶ୍ନ କରନ୍ତୁ । ତେଣୁ ଭୋ ତାତ ଶୁଣ ଏକଚିତ୍ତେ ବିପ୍ର କହନ୍ତି ଦେବମତେ ଅର୍ଥାତ୍ ସତ୍ୟ ଯେ ପିତା ମାତା ବୃଦ୍ଧଭାବେ ନିଜ ଭାହଯା ଶିଶୁମେଳେ । ଗୋରୁ ବ୍ରାହ୍ମଣ ମାନ୍ୟଜନ ଏହାଙ୍କୁ ନ ଦେଇ ଭୋଜନ ଯେ ପ୍ରାଣୀ ଆତ୍ମାକୁ ପୋଷନ୍ତୁ-ଜୀବନ ଥାଇରେ ମରନ୍ତି ଏହାଠାରୁ ବଳି ନିଷ୍ଠୁର ସତ୍ୟ କିଛିନାହିଁ । ଏହା ଭାଗବତବାଣୀ । ଆମ୍ଭେ ଭାତୃଦ୍ୱୟଙ୍କର ଭୟେ ଗୋପେ ଥାଇ ଦୁଃଖ ବଞ୍ଚିଲୁ ଦୁଇଭାଇ ତୁମ୍ଭ ନାହିଁମନ ନିଶ୍ଵକେ ଗଲା ଆମ୍ଭ ଦିନ ସେ ଦୋଷୁ କ୍ଷମା ବର ତାତ ଆମ୍ଭେ ହୋଇକୁ ପରାୟତ" ଏଠାରେ ଦୁଇଭାଇ କୃଷ୍ଣ ଓ ବଳରାମ ନିଜର ପିତାମାତା ଥିଲେ ମଧ ଦେବିଙ୍କୁ କ୍ଷମା ପାର୍ଥନା କରିଛନ୍ତି । ଭାଗବତ ବାଣୀ ମାନବ ସମାଜକୁ ଆଦର୍ଶପଥ ଦେଖାଏ ଏହା ଏକ ପୌରାଣିକ ଘଟଣାବଳୀ ଉପରେ ଆଧାରିତ ହେଲେ ମଧ ଏକ ଆଦର୍ଶ ସମାଜ ଗଠନରେ ସାହାଯ୍ୟ କରେ ।

# ପରିଚୟ ପତ୍ର



ନାମ- ହରେକୃଷ୍ଣ ଦାସ

ପିତା - ସ୍ୱର୍ଗତ ଗୋପାଳ ଚରଣ ଦାସ

ମାତା - ସ୍ୱର୍ଗତ ହୁଲାଳୀ ଦାସ

ବଂଶ - ମହାପୁରୁଷ ନିତ୍ୟାନନ୍ଦ ଗୋସାଇଙ୍କ ବଂଶର ସପ୍ତମ ପୁରୁଷ

ଠିକଣା- ଗ୍ରାମ / ଡାକଘର- ସିଙ୍ଗିରି,

ଜିଲ୍ଲା- କେନ୍ଦ୍ରାପଡା-୭୫୪୨୧୫

ଶିକ୍ଷାଗତ- ବି.ଏ.ବିଇଡ୍,
ଡିପ୍-ଇନ୍-ଲିଙ୍ଗୁଆଷ୍ଟିକ(ଅହମିଆ)
ସି.ପି.ଇଡ.

ବୃତ୍ତି- ଶିକ୍ଷକତା (ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ)

ଜନ୍ମ ତାରିଖ-୧୨.୦୧.୧୯୪୨ମସିହା

ଅବସର ଗ୍ରହଣ- ୩୧.୦୧.୨୦୦୦ମସିହା